




# ଆନନ୍ଦ ସାହିବ

# Anand Sahib

## ରାମକଲୀ ରାଗରେ ତୃତୀୟ ନାନକ ଗୁରୁ ଅମରଦାସ ଜୀ ରଚିତ ବାଣୀର

## ଓଡ଼ିଆ ଅନୁବାଦ

ੴ

# ଆନନ୍ଦ ସାହିବ୍

(ରାମକଲୀ ରାଗ୍ରେ  ତୃତୀୟ ନାନକ ଗୁରୁ ଅମର୍ଦାସ୍ ଜୀ ରଚିତ)

'ଆନନ୍ଦ' ନାମକ ବାଣୀ

# ਅਨੰਦੁ ਸਾਹਿਬ

ਸ੍ਰੀ ਗੁਰੂ ਅਮਰਦਾਸ ਜੀ

( ਉੜੀਆ ਕਵਿਤਾ ਟੀਕਾ )

ਸਃ ਕਿਰਪਾਲ ਸਿੰਘ 'ਡਾਕੀਆ'

--: କବିତାରେ ଓଡ଼ିଆ ଅନୁବାଦ ବାଣୀ ସହିତ :--

**ସର୍ଦାର୍  କିର୍ପାଲ୍ ସିଂଘ 'ଡାକୀଆ'**

ଉର୍ଫ ହରିହର ଡାକୁଆ

ପୁରୁଣାପଡ଼ା, ଭବାନୀପାଟଣା-- ୭୬୬୦୦୧

    

ਬਾਣੀ ਪੁਸਤਕ ਦਾ ਨਾਮ:-- ਆਨੰਦ ਸਾਹਿਬ ਜੀ
ଓ୍ୱାଣୀ ପୁସ୍ତକର ନାମ୍ : - ଆନନ୍ଦ୍ ସାହିବ୍ ଜୀ
ਅਨੁਵਾਦਕ : - ਸਰਦਾਰ ਕਿਰਪਾਲ ਸਿੰਘ 'ਡਾਕੀਆ'
ਮੋਬਾਇਲ- ੯੪੩੭੨੨੪੯੫੮ ,੮੯੧੭੪ ੦੮੫੫੧
ਪੁਰੁਣਾਪੜਾ, ਭਵਾਨੀਪਟਣਾ-੭੬੬੦੦੧
ଅନୁବାଦକ : - ସର୍ଦାର୍ କିର୍ପାଲ୍ ସିଂଘ 'ଡାକୀଆ'
ମୋବାଇଲ- ୯୪୩୭୨୨୪୯୫୮, ୮୯୧୭୪ ୦୮୫୫୧
ପୁରୁଣାପଡ଼ା, ଭବାନୀପାଟଣା-୭୬୬୦୦୧
ਪ੍ਰਕਾਸ਼ਨ ਸਾਲ :- ੦੫-੦੧-੨੦੧੯
(ਦਸ਼ਮ ਗੁਰੂ ਸ਼੍ਰੀ ਗੁਰੂ ਗੋਬਿੰਦ ਸਿੰਘ ਜੀ ਦਾ ਜਨਮ-ਦਿਹਾੜਾ)
ପ୍ରକାଶନ ବର୍ଷ :- ୦୫-୦୧-୨୦୧୯
(ଦଶମ ଗୁରୁ ଶ୍ରୀ ଗୁରୁ ଗୋବିଂଦ ସିଂଘ୍ ଜୀଙ୍କର ଜନ୍ମ-ଦିବସ )
ਸਥਾਨ :- ਭਵਾਨੀਪਟਣਾ
ସ୍ଥାନ :- ଭବାନୀପାଟଣା
ਮੁਦ੍ਰਕ :- ਸਰਦਾਰ ਸੁਰਿੰਦਰਜੀਤ ਸਿੰਘ ਭੰਬਰਾ - ਸਿੰਘ ਕੰਪਯੂਟਰਸ ,
ਭਵਾਨੀਪਟਣਾ - ਕਾਲਾਹਾਂਡੀ - ਉੜੀਸਾ ੭੬੬੦੦੧
ਮੋਬਾਈਲ- ੯੪੩੭੦੭੦੨੩੫
ମୁଦ୍ରକ :- ସର୍ଦାର୍ ସୁରିଂଦରଜୀତ୍ ସିଂଘ୍ ଭଂବରା - ସିଂଘ୍ କମ୍ପ୍ୟୁଟରସ୍ ,
ଭବାନୀପାଟଣା - କଳାହାଣ୍ଡି - ଓଡ଼ିଶା ୭୬୬୦୦୧
ମୋବାଇଲ - ୯୪୩୭୦୭୦୨୩୫

# ੴ

**ੴ ਸਤਿਨਾਮੁ ਕਰਤਾ ਪੁਰਖੁ ਨਿਰਭਉ**

**ਨਿਰਵੈਰੁ ਅਕਾਲ ਮੂਰਤਿ ਅਜੂਨੀ ਸੈਭੰ ਗੁਰ ਪ੍ਰਸਾਦਿ ।।**

( ਮੂਲ-ਮੰਤ੍ਰ , ਜਪੁਜੀ ਸਾਹਿਬ )

'ੴ' ୧ଓଂକାର ସତିନାମୁ କରତା ପୁରଖୁ ନିରଭଉ

ନିରୱୈରୁ ଅକାଲ ମୂରତି ଅଜୂନୀ ସୈଭଂ ଗୁର ପ୍ରସାଦି ।।

(ଉଚ୍ଚାରଣ-- ଇକ୍ ଓଂକାର୍ , ସତ୍‌ନାମ୍ , କର୍ତ୍ତା ପୁରୁଖ୍ , ନିରଭଉ ,

ନିରୱୈର୍ , ଅକାଲ୍ ମୂରତ୍ , ଅଜୂନୀ, ସୈଭଂ, ଗୁର୍‌ପ୍ରସାଦ୍ )

ଅର୍ଥ --ସେହି ପରମ ତତ୍ତ୍ୱ , ଯାହାର ବାଚକ ଓଂ, ସେ କେବଳ ଏକ , ଅକାଧିକ ନୁହଂତି । ସେ ସତ୍ୟ ଅର୍ଥାତ୍ ଚିରସ୍ଥିତ । ସେ ସୃଷ୍ଟିର ଜନକ ଓ ତହିଁରେ ପରିବ୍ୟାପ୍ତ । ସେ ଭୟହୀନ । ତାଙ୍କର କାହାରି ସହିତ ହେଲେ ଶତୃତା ନାହିଁ । ତାଙ୍କର ଅସ୍ତିତ୍ୱ କାଳ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ । ତାଙ୍କର ଜନ୍ମ ନାହିଁ , କାରଣ ସେ ସ୍ୱତଃ -ପ୍ରକାଶିତ । ସେ କେବଳ ଗୁରୁ-କୃପା ଦେଇ ହିଁ ଉପଲବ୍ଧ ହେଇଥାନ୍ତି ।

( ମୂଳ-ମନ୍ତ୍ର , ଜପୁଜୀ ସାହିବ )

## ----- :::: ତୃତୀୟ ନାନକ ଗୁରୁ ଅମର୍‌ଦାସ୍ ଜୀ ::::-----

ଶିଖ୍‌ଧର୍ମର ତୃତୀୟଗୁରୁ (ତୃତୀୟ ନାନକ ) ଗୁରୁ ଅମର୍‌ଦାସ୍‌ଜୀ ଅମୃତସର୍ ଜିଲ୍ଲା, ବାସ୍‌ରକେ ତହସିଲ/ଗ୍ରାମରେ ତା: ୦୫ ମଇ ମାସ ୧୪୭୯ ଖ୍ରୀ:ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ତେଜ୍‌ଭାନ୍ ଓ ମାତାଙ୍କ ନାମ ସୁଲକ୍ଷଣୀ (ଲକ୍ଷ୍ମୀ) ।

ଅମର୍‌ଦାସ୍ ଜୀ ସଣ୍‌ଖତ୍‌ରେ ଗ୍ରାମର ଶ୍ରୀ ଦେବୀଚନ୍ଦ୍ ଖତ୍ରୀଙ୍କ ସୁପୁତ୍ରୀ ରାମକୌର୍‌ଙ୍କୁ ବିବାହ କରିଥିଲେ । ସେମାନଙ୍କର ଦୁଇ ପୁତ୍ର ବାବା ମୋହନ୍‌ଜୀ ଓ ବାବା ମୋହ୍‌ରୀଜୀ ଏବଂ ଦୁଇ ଝିଅ ବୀବୀ ଦାନୀଜୀ ଓ ବୀବୀ ଭାନୀଜୀ । ଗୁରୁ ଅମରଦାସ୍‌ଜୀ ଦ୍ୱିତୀୟ ଗୁରୁ ଅଙ୍ଗଦ୍‌ଦେବ୍‌ଜୀ ତଥା ତାଙ୍କର ଶିଷ୍ୟ-ମଣ୍ଡଳୀ (ସଙ୍ଗତ)ର ବହୁତ ସେବା କରୁଥିଲେ । ତାଙ୍କର ନମ୍ରତା ଓ ସମତାଭାବରେ ପ୍ରୀତ ହୋଇ ଗୁରୁ ଶ୍ରୀ ଅଙ୍ଗଦ୍‌ଦେବଜୀ ତାଙ୍କୁ ଗୁରୁଗାଦି ପ୍ରଦାନ କରିଥିଲେ । ଏହାଥିଲା ତା: ୨୯ ମାର୍ଚ୍ଚ ୧୫୫୨ ଖ୍ରୀ:ର ଘଟଣା । ଦ୍ୱିତୀୟ ନାନକ ଶ୍ରୀ ଗୁରୁ ଅଙ୍ଗଦ୍‌ଦେବ୍‌ଜୀ ଶ୍ରୀ ଅମର୍‌ଦାସ୍‌ଜୀଙ୍କ ସମ୍ମୁଖରେ ପାଞ୍ଚ ପଇସା ଓ ଗୋଟିଏ ନାରିକେଳ ରଖି ମଥାପାତି ନମସ୍କାର କଲେ ଓ ଗୁରୁଗାଦିରେ ଉପବେଶନ କରାଇଲେ । ୭୨ ବର୍ଷ ବୟସରେ ସେ ଶିଖ୍‌ଧର୍ମର ତୃତୀୟ ନାନକ୍ 'ଗୁରୁ' ରୂପେ ଆସୀନ ହେଲେ । ସମାଜରୁ ଛୁଆଅଛୁଆଁ , ଜାତିଭେଦ , ଉଚ୍ଚନୀଚ ଭେଦ-ଭାବ ଦୂର କରିବା ପାଇଁ ପ୍ରଥମ ଗୁରୁ ସମସ୍ତ ଶିଖ୍‌ମାନଙ୍କୁ ପଙ୍ଗତରେ ଏକତ୍ର ବସି ପ୍ରସାଦ ଗ୍ରହଣ କରିବାକୁ ଉପଦେଶ ଦେଇ ଥିଲେ କିନ୍ତୁ ଗୁରୁ ଅମର୍‌ଦାସ୍‌ଜୀ ସମାଜରୁ ଜାତିପାତି ଓ ଛୁଆଁଛୁତିକୁ ପୂରାପୂରି ଶେଷ କରିବା ପାଇଁ ଆଦେଶ (ଆଜ୍ଞା) ଦେଲେ । ମହାନ୍ ମୋଗଲ୍ ବାଦ୍‌ଶାହ୍ ଆକବର୍ ସଙ୍ଗତ ସହିତ ଏକତ୍ର ଉପବେସନ କରି ପ୍ରସାଦ ଗ୍ରହଣ କଲା ପରେ ହିଁ ଗୁରୁ ଶ୍ରୀ ଅମର୍‌ଦାସ୍‌ଜୀଙ୍କ ଦର୍ଶନ ପାଇ ପାରିଥିଲେ । ସ୍ତ୍ରୀ ମାନଙ୍କୁ ପୁରୁଷଙ୍କ ସହିତ ସମାନ ଅଧିକାର ଦେବା ସହିତ ସତୀ-ପ୍ରଥାକୁ ଉଠାଇ ଦେବା ନିମନ୍ତେ ଗୁରୁ ଅମର୍‌ଦାସ୍‌ଜୀ ବିଶେଷ ଧ୍ୟାନ ଦେଇଥିଲେ । ସତୀପ୍ରଥା ଅନୁସାରେ ମୃତ ପତିର

ଜୁଇରେ ସ୍ତ୍ରୀମାନେ ଜୀବନ୍ତ ଦଗ୍ଧ ହୋଇଯାଉଥିଲେ । ଗୁରୁଜୀ ଏହାର ଶକ୍ତ ବିରୋଧ କରିଥିଲେ । ସେ ସ୍ତ୍ରୀ ଜାତିର ପରଦାପ୍ରଥା ମଧ୍ୟ ଦୂର କରିଥିଲେ ।

ଶିଝା-ଚଣା 'ଘୁଂଘନୀ' ବିକି ଜୀବନ ନିର୍ବାହ କରୁଥିବା ଜଣେ ଅନାଥ ଯୁବକ ଭାଇ ଜେଠା (ରାମଦାସ ଜୀ)ଙ୍କ ସହିତ ତାଙ୍କର ସୁପୁତ୍ରୀ ବୀବୀ ଭାନୀଜୀଙ୍କ ବିବାହ ସ୍ଥିର କରିଥିଲେ । ଜାତି-ପାତି ସମ୍ବନ୍ଧୀୟ ପଚରା-ଉଚରା ନକରି ସେ ଏହି ବିବାହ ସ୍ଥିର କରିଥିଲେ । ଶାନ୍ତି ଓ ସହନଶୀଳତାର ପୁଞ୍ଜ ଶ୍ରୀ ଅମର୍‌ଦାସ୍‌ଜୀ ହୃଦୟରୁ ଅହଂକାର ଦୂର କରି ଅନ୍ୟର ସେବା କରିବାକୁ ଶିକ୍ଷା ଦେଇଥିଲେ । ଜନତାର ସୁଖ-ସୁବିଧା ପାଇଁ ଓ ଛୁଆଁଛୁତି ଜାତି-ଭେଦର ଭ୍ରମ ଦୂର କରିବା ନିମନ୍ତେ ଗୋଟିଏ ବାଉଲି ବା ସାମୁହିକ କୂପ ଖନନ କରାଇଥିଲେ ।

ଗୁରୁଜୀ ଅନେକ ଗୁଡ଼ିଏ ଗୁରୁବାଣୀ ରଚନା କରିଛନ୍ତି , ସେ ଗୁଡ଼ିକ ମଧ୍ୟରୁ "ଆନନ୍ଦ ସାହିବ ଜୀ" ପ୍ରଧାନ ଅଟେ । ଗୁରୁଦ୍ୱାରା ଓ ସଙ୍ଗତ ବସିଥିବା ସ୍ଥାନରେ ସକାଳ ଓ ସନ୍ଧ୍ୟା ସମୟରେ ଏହାର ନିଶ୍ଚୟ ଉଚ୍ଚାରଣ (ଗାନ) କରାଯାଇଥାଏ ।

-----((((()))))-----

--- : ଅନୁବାଦକଙ୍କ ଦିପଦ :---

ପ୍ରିୟ ପାଠକ ବନ୍ଧୁ,

ୱାହିଗୁରୁ ଜୀ କା ଖାଲ୍ସା , ୱାହିଗୁରୁ ଜୀ କୀ ଫତେହ୍ ।

ଦାସ ସର୍ଦାର୍ କିର୍ପାଲ୍ ସିଂଘ୍ 'ଡାକୀଆ' ଉର୍ଫ ହରିହର 'ଡାକୁଆ' ଜଣେ ଓଡ଼ିଆ ଶିଖ୍ । ଓଡ଼ିଆ ଭାଷାଭାଷୀ ଭାଇ ଭଉଣୀଙ୍କ ପାଇଁ ଶିଖ୍ ଧର୍ମର ଧର୍ମଗ୍ରନ୍ଥ ଆଦି ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଜୀର ୧)- ଜପୁଜୀ ସାହିବ ଜୀ , ୨)-ଆନନ୍ଦ ସାହିବ ଜୀ , ୩)- ସୁଖମନୀ ସାହିବ ଜୀ , ଓ ୪)- ସଲୋକ ମହଲା ନୌୱାଁକୁ ଓଡ଼ିଆ ଭାଷାରେ ଦାସ ଅନୁବାଦ କରିଛି । ଏଥି ନିମନ୍ତେ ପରମପିତା ପରମେଶ୍ୱର ୱାହିଗୁରୁ ଦାସ ଉପରେ ଅସୀମ କୃପା ବର୍ଷଣ କରିଥିବା ଦାସ ଅନୁଭବ କରିଛି ।

ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଜୀ ଗୁରୁମୁଖୀ ଲିପିରେ ଲିଖିତ । ଏହି ଗ୍ରନ୍ଥରେ ୬ ଜଣ ଶିଖ୍ ଗୁରୁ , ବିଭିନ୍ନ ପ୍ରାନ୍ତର ୧୫ ଜଣ ଭକ୍ତ , ୧୧ ଜଣ ଭାଟ ଓ ୪ ଜଣ ଶିଷ୍ୟଙ୍କର ବାଣୀ ବିଭିନ୍ନ ଭାଷା ଓ ବିଭିନ୍ନ ରାଗ ରାଗିଣୀରେ ଲିପିବଦ୍ଧ ହୋଇଛି ।

**୧)**-- ୬ ଜଣ ଗୁରୁ- ଶ୍ରୀ ଗୁରୁ ନାନକ୍ ଦେଓ୍ ଜୀ, ଶ୍ରୀ ଗୁରୁ ଅମର୍ଦାସ୍ ଜୀ , ଶ୍ରୀ ଗୁରୁ ରାମ୍ଦାସ୍ ଜୀ , ଶ୍ରୀ ଗୁରୁ ଅର୍ଜୁନ୍ ଦେଓ୍ ଜୀ , ଶ୍ରୀ ଗୁରୁ ତେଗ୍ ବାହାଦୁର୍ ଜୀ ।

**୨)**-- ୧୫ ଜଣ ଭକ୍ତ- କବୀର୍ ଜୀ, ନାମ୍ଦେଓ୍ ଜୀ , ରୱିଦାସ୍ ଜୀ , ତ୍ରିଲୋଚନ୍ ଜୀ , ଫରୀଦ୍ ଜୀ , ବୈଣୀ ଜୀ , ଧନ୍ନା ଜୀ , ଜୈଦେଓ୍ ଜୀ , ଭୀଖଣ୍ ଜୀ , ସୁର୍ଦାସ୍ ଜୀ , ପରମାନନ୍ଦ୍ ଜୀ , ସୈଣ୍ ଜୀ , ପୀପା ଜୀ , ସଧନା ଜୀ , ରାମାନନ୍ଦ୍ ଜୀ ଆଦି ବିଭିନ୍ନ ପ୍ରାନ୍ତର ଭକ୍ତ ମାନଙ୍କର ବାଣୀ ଶାମିଲ୍ କରା ଯାଇଛି ।

**୩)**-- ୧୧ ଜଣ ଭାଟ - କଲ୍ଲସହାର୍ , ଜାଲପ୍ , କୀରତ୍ , ଭିକ୍ଖା , ସଲ୍ହ , ଭଲ୍ହ , ନଲ୍ହ , ବଲ୍ହ , ମଥୁରା , ଗୟନ୍ଦ୍ , ହରିବଂସ୍ ।

**୪)** -- ୪ ଜଣ ଶିଷ୍ୟ - ଭାଇ ମରଦାନା ଜୀ , ବାବା ସୁଂଦର୍ ଜୀ , ଭାଇ

ସତ୍ତା ଜୀ ଓ ଭାଇ ବଲୱଂଡ୍ ଜୀ ।

୫)-- ରାଗ -- ୩୧ ରାଗ , ରାଗିଣୀ

୬)-- ଭାଷା-- **ବହୁ ଭାଷା , ପୂରା ବିଶ୍ୱରେ ଏହା ଗୋଟିଏ ଗ୍ରନ୍ଥ ଯେଉଁଟା କି ଏତେ ଗୁଡ଼ିଏ ଭାଷାରେ ରଚିତ ହୋଇଅଛି** । ଅରବୀ , ଫାରସୀ , ଉର୍ଦୁ , ସିନ୍ଧୀ , ସଂସ୍କୃତ ( ତତ୍ସମ ଓ ତଦ୍ଭବ) , ସାଧୁକ୍କଡ଼ୀ (ବ୍ରଜ ଭାଷା ) , ଗୁଜରାତୀ , ରାଜସ୍ଥାନୀ , ମରାଠୀ , ଓଡ଼ିଆ , ବଂଗାଲୀ , ଅୱଧୀ , ଆହୁରି ଅନେକ ଭାଷା ଯାହା ମୁଁ କହି ପାରୁ ନାହିଁ । ଗୁରୁ ନାନକ ଦେୱ ଜୀ ଯେଉଁ ଯେଉଁ ପ୍ରାନ୍ତକୁ ଭ୍ରମଣ କରିଛନ୍ତି , ସେ ପ୍ରାନ୍ତର ଭାଷା ମଧ୍ୟ ମିଶାଇ ଲେଖିଛନ୍ତି । ଏତିକି ଭାଷାରେ ଲିଖିତ ଗ୍ରନ୍ଥର ଅନୁବାଦ କରିବାଟା ସହଜ ନୁହେଁ । ଏତେ ଗୁଡ଼ିଏ ଭାଷାରେ ରଚିତ ବାଣୀ ଓ ଭାବର ଉଚିତ ନିର୍ବହନ ପୂର୍ବକ ଅନୁବାଦ କାର୍ଯ୍ୟ ସରଳ ନ ଥିଲା । ଦଶମ ଗୁରୁ ଶ୍ରୀ ଗୁରୁ ଗୋବିନ୍ଦ ସିଂଘ ଜୀ ଖାଲ୍ସା ପନ୍ଥର ସୃଜନ ସମୟରେ ଶିଖ୍ ମାନଙ୍କର ପରୀକ୍ଷା ନେଇ ଯେଉଁ ପାଞ୍ଚ ଜଣ (ଭାଇ ଦୟା ସିଂଘ ଜୀ , ଭାଇ ଧରମ ସିଂଘ ଜୀ , ଭାଇ ହିମ୍ମତ ସିଂଘ ଜୀ , ଭାଇ ମୁହକମ ସିଂଘ ଜୀ , ଭାଇ ସାହିବ ସିଂଘ ଜୀ) ଙ୍କୁ ପଞ୍ଚ ପ୍ୟାରେ ପଦବୀ ପ୍ରଦାନ କରି ଥିଲେ , ସେମାନଙ୍କର ମଧ୍ୟରୁ ଜଣେ ଭାଗ୍ୟବାନ ଥିଲେ ଓଡ଼ିଆ ଯୁବକ , ପୁରୀ ନିବାସୀ " ହିମ୍ମତ ରାୟ " । ଅମୃତ-ପାନ କଲା ପରେ ତାଙ୍କର ନାମ " ହିମ୍ମତ ସିଂଘ " ରଖା ଗଲା । ଏହାକୁ ଦୃଷ୍ଟିରେ ରଖି କେହିହେଲେ ଜଣେ ଉତ୍କଳୀୟ ଶିଖ୍ ଶିଖ୍ଧର୍ମର ପ୍ରଚାର ପ୍ରସାର ନିମନ୍ତେ ଚେଷ୍ଟିତ ହୋଇ ଥାଆନ୍ତା । ତେଣୁ ଏହି ଦାସ ଦ୍ୱାରା କରା ଯାଇଥିବା କିଞ୍ଚିତ ପ୍ରଚେଷ୍ଟା ବୃଥା ହେବ ନାହିଁ । ଏହି କାର୍ଯ୍ୟ ଆହୁରି ଆଗକୁ ବଢ଼ିବ , ଦାସ ଏହି ଆଶା ରଖିଚି ।

ମୂଳବାଣୀକୁ ସର୍ଦାର୍ ସୁରିଂଦରଜୀତ୍ ସିଂଘ୍ 'ଭଂବରା' ମୂଳ ଗୁରମୁଖୀରୁ ଓଡ଼ିଆ ଲିପିକୁ ଲିପ୍ୟନ୍ତର କରିଛନ୍ତି । ଯେଉଁ ମାନେ ନିୟମିତ ମୂଳବାଣୀକୁ ପାଠ କରିବାକୁ ଚାହାନ୍ତି ସେମାନେ କିଞ୍ଚିତ ସାବଧାନତା ଅବଲମ୍ବନ କରିବାକୁ ଅନୁରୋଧ ।

ଗୁରମୁଖୀ ଲିପି ଦୃଷ୍ଟିରୁ ----

ଅ , ଆ , ଇ , ଈ , ଉ , ଊ , ଏ , ଐ , ଓ , ଔ - ଏ ଗୁଡ଼ିକ ସ୍ୱର ବର୍ଣ୍ଣ , ଅନ୍ୟ ଅକ୍ଷର ଗୁଡ଼ିକ ବ୍ୟଞ୍ଜନ ବର୍ଣ୍ଣ । ଯଥା :-

କ ଖ ଗ ଘ ଙ

ଚ ଛ ଜ ଝ ଞ

ଟ ଠ ଡ ଢ ଣ

ତ ଥ ଦ ଧ ନ

ପ ଫ ବ ଭ ମ -- ଏ ଗୁଡ଼ିକ ବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ ।

ୟ ର ଲ ୱ ଡ଼ --ଏ ଗୁଡ଼ିକ ଅବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ ।

ସ୍ୱର ବର୍ଣ୍ଣ ଗୁଡ଼ିକ ମଧ୍ୟରୁ ଅ , (ହ୍ରସ୍ୱ) ଇ , ଏବଂ (ହ୍ରସ୍ୱ) ଉ ଲଘୁ ସ୍ୱର ବର୍ଣ୍ଣ ।

ଏ ଗୁଡ଼ିକର ଉଚ୍ଚାରଣ ଲଘୁଭାବରେ ଉଚ୍ଚାରିତ ହୁଏ । ସମସ୍ତ ସ୍ୱରବର୍ଣ୍ଣକୁ ଲଗା-ମାତ୍ରା ଭାବରେ , ବ୍ୟଞ୍ଜନ ବର୍ଣ୍ଣ ଗୁଡ଼ିକରେ ଲଗା ଯାଇ ବ୍ୟବହାର କରାଯାଏ ଓ ଉଚ୍ଚାରଣ କରାଯାଏ । ହ୍ରସ୍ୱ ସ୍ୱର ବର୍ଣ୍ଣ ଲାଗିଥିବା ବ୍ୟଞ୍ଜନ ବର୍ଣ୍ଣ ଗୁଡ଼ିକ ସମୟ ଦୃଷ୍ଟିରୁ କମ ସମୟ ପାଇଁ ବା ଲଘୁ ଉଚ୍ଚାରଣ ଓ ଦୀର୍ଘ ସ୍ୱର ଲଗାମାତ୍ରା ଲାଗିଥିବା ବ୍ୟଞ୍ଜନ ବର୍ଣ୍ଣ ଗୁଡ଼ିକ ସମୟ ଦୃଷ୍ଟିରୁ ଦୀର୍ଘ ସମୟ ପାଇଁ ବା ଦୀର୍ଘ ଉଚ୍ଚାରଣ କରାଯାଏ ।

**୧)**-- ମୂଳପାଠ ଗୁଡ଼ିକୁ ଉଚ୍ଚାରଣ କଲାବେଳେ ଶବ୍ଦର ଶେଷ ବ୍ୟଞ୍ଜନ ଅକ୍ଷର ଯଦି ଅକାରାନ୍ତ ହୋଇଥାଏ ତେବେ ତାହା ହସନ୍ତଯୁକ୍ତ କରି ଉଚ୍ଚାରଣ କରିବେ ।

ଯଥା : --- <u>ଶବ୍ଦ</u> <u>ଉଚ୍ଚାରଣ</u>

ନାନକ --- କ ----କ୍ ( ନାନକ୍ )

ଲଖ --- ଖ ----ଖ୍ ( ଲଖ୍ )

ଚୁପ --- ପ ---- ପ୍ (ଚୁପ୍ )

ତାର --- ର ---- ର୍ (ତାର୍ )

**୨)**-- ଶବ୍ଦର ଶେଷ ବ୍ୟଞ୍ଜନ ଅକ୍ଷରରେ ଯଦି ହ୍ରସ୍ୱ ଇ-କାର ଲାଗିଥାଏ ତେବେ (ହ୍ରସ୍ୱ) ଇକାରକୁ ବାଦ୍ ଦେଇ ହସନ୍ତ ଲଗାଇ ଉଚ୍ଚାରଣ କରିବେ ।

ଯଥା --- ଶବ୍ଦ ଉଚ୍ଚାରଣ

ମୂରତି --- ତି ---- ତ୍ ( ମୂରତ୍ )

ପ୍ରସାଦି --- ଦି ---- ଦ୍ ( ପ୍ରସାଦ୍ )

ସୋଚି --- ଚି ---- ଚ୍ ( ସୋଚ୍ )

ନାଲି --- ଲି ---- ଲ୍ ( ନାଲ୍ )

ଘସି --- ସି ---- ସ୍ ( ଘସ୍ )

ହରି --- ରି ---- ର୍ ( ହର୍ )

ହୁକମି --- ମି ---- ମ୍ ( ହୁକମ୍ )

**୩)**--- ଶବ୍ଦର ଶେଷରେ ବ୍ୟଞ୍ଜନ ବର୍ଣ୍ଣ ଥିଲେ ଓ ସେଥିରେ ହ୍ରସ୍ୱ ଉ-କାର ମାତ୍ରା ଲାଗିଥିଲେ , ହ୍ରସ୍ୱ ଉକାରକୁ ଛାଡ଼ି ଦେଇ ସେଥିରେ ହସନ୍ତ ଲଗାଇ ପାଠ କରିବେ ।

ଯଥା --- ଶବ୍ଦ ଉଚ୍ଚାରଣ

ମୋହୁ --- ହୁ ----ହ୍ ( ମୋହ୍ )

ସଚୁ --- ଚୁ ----ଚ୍ ( ସଚ୍ )

ହୁକମୁ --- ମୁ ---- ମ୍ ( ହୁକମ୍ )

ମସୁ --- ସୁ ---- ସ୍ ( ମସ୍ )

କାଗଦୁ --- ଦୁ ---- ଦ୍ ( କାଗଦ୍ )

ସାରୁ --- ରୁ ---- ର୍ ( ସାର୍ )

ଏହୁ --- ହୁ ---- ହ୍ ( ଏହ୍ )

**୪)**--- ଶେଷ ବର୍ଣ୍ଣଟି ହ୍ରସ୍ୱ 'ଇ' ହୋଇଥିଲେ 'ଇ' ବଦଳରେ ଲଘୁ 'ଏ' ଉଚ୍ଚାରଣ କରନ୍ତୁ ।

ଯଥା --- ଶବ୍ଦ ଉଚ୍ଚାରଣ

କୋଇ --- ଇ --- ଏ ( କୋଏ )

ନାଇ --- ଇ ---- ଏ ( ନାଏ )

**୫)**--- ଶେଷ ବର୍ଣ୍ଣଟି ହ୍ରସ୍ୱ 'ଉ' ହୋଇଥିଲେ 'ଉ' ବଦଲରେ 'ଓ' ଉଚ୍ଚାରଣ କରନ୍ତୁ ।

ଯଥା --- ଶବ୍ଦ ଉଚ୍ଚାରଣ

ନାଉ --- ଉ ---- ଓ ( ନାଓ )

ଭାଉ --- ଉ ---- ଓ ( ଭାଓ )

ଦରିଆଉ --- ଉ ---- ଓ ( ଦରିଆଓ )

ତାଉ --- ଉ ---- ଓ ( ତାଓ )

ମୂଳପାଠକୁ କିଛି ଦିନ ଏ ଭଳି ପଢ଼ିବାକୁ ଚେଷ୍ଟା କରନ୍ତୁ ଅଥବା କୌଣସି ଜ୍ଞାନୀ କିମ୍ବା ପାଠୀଙ୍କ ଠାରୁ ଉପଦେଶ ପ୍ରାପ୍ତ କରନ୍ତୁ । ଆପଣଙ୍କ ମୂଳପାଠ ଉଚ୍ଚାରଣ ଶୁଦ୍ଧ ହୋଇ ଯିବ ।

ମୂଳବାଣୀକୁ ଓଡ଼ିଆ ଭାଷାରେ ଅନୁବାଦ କଲା ବେଳେ ସ୍ୱର୍ଗତ ସର୍‌ଦାର୍ ଦରସନ୍ ସିଂଘ୍ ୱିର୍କ ଜୀ, ସ୍ୱର୍ଗତ ସର୍‌ଦାର୍ ଉଜାଗର୍ ସିଂଘ୍ ସଂଧୁ ଜୀ , ସ୍ୱର୍ଗତ ସର୍‌ଦାର୍ କର୍‌ତାର୍ ସିଂଘ୍ ସଂଧୁ ଜୀ, ସ୍ୱର୍ଗତ ସର୍‌ଦାର୍ ତାରା ସିଂଘ୍ ଭମ୍ବ୍ରା ଜୀ (ପ୍ରଧାନ- ଗୁରୁଦୁଆରା, ଭବାନୀପାଟଣା ) ବିଭିନ୍ନ ପ୍ରକାର ସାହାଯ୍ୟ ଦେଇ ଦାସକୁ ଉତ୍ସାହିତ କରିଥିବାରୁ ଦାସ ଚିରୋପକୃତ ରହିଛି ଓ ରହିବ । ସ୍ୱର୍ଗତ ସର୍‌ଦାର୍ ତରଲୋକ ସିଂଘ ସଗ୍‌ଗୁ ଜୀ ଯେଉଁ ସାହାଯ୍ୟ , ସହାନୁଭୂତି ଓ ଉତ୍ସାହ ପ୍ରଦାନ କରିଥିଲେ ତାହା କଦାପି ଭୁଲିବାର ନୁହେ ।

ପୁସ୍ତକ ଗୁଡ଼ିକର ପ୍ରକାଶନ ଅବସରରେ ଦାସ ସମସ୍ତଙ୍କୁ ସ୍ମରଣ କରୁଛି । ପରମପିତା ପରମେଶ୍ୱର ୱାହିଗୁରୁ ଦିବଂଗତ ମହାପୁରୁଷ ମାନଙ୍କ ଆତ୍ମାକୁ ଆପଣା ଚରଣ ତଳେ ଶରଣ ପ୍ରଦାନ କରିବାକୁ ନତମସ୍ତକ ହୋଇ ଅର୍‌ଦାସ୍ କରୁଛି ।

ଯେଉଁ ବନ୍ଧୁମାନେ ପ୍ରକାଶନର ଦାୟିତ୍ୱ ନେଇଛନ୍ତି ସେମାନଙ୍କୁ ଦାସ କୃତଜ୍ଞତା ପ୍ରକାଶ କରୁଛି , ୱାହିଗୁରୁ ତାଙ୍କୁ ଜାଗତିକ ଓ ଆତ୍ମିକ ଆନନ୍ଦ ପ୍ରଦାନ କରନ୍ତୁ ।

ଭୁବନ୍‌ବାଣୀ ଟ୍ରସ୍ଟ୍ , ଲକ୍ଷ୍ନୌ ଦ୍ୱାରା ପ୍ରକାଶିତ ଆଦି ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଜୀର ହିଂଦୀ ଅନୁବାଦର ସାହାଯ୍ୟ ବିନା ଏହି ଓଡ଼ିଆ ଅନୁବାଦ ସମ୍ଭବ ନଥିଲା ଏଣୁ ଏହାର ହିଂଦୀ ଅନୁବାଦକ ଡା: ମନ୍‌ମୋହନ୍ ସହ୍‌ଗଲ୍‌ଙ୍କ ନିକଟରେ ଏହି ଦାସ ଋଣୀ ରହିଲା ।

ଓଡ଼ିଆ ଭାଷା ଓ ଲିପିରେ ଅନୁବାଦ ଓ ଲିପ୍ୟନ୍ତରଣ କରି ଲେଖିବା ଅବସରରେ ଅନେକ ତୃଟି , ଭୁଲ୍‌ଭଟକା କରି ଥିବି , ଯୋଡ଼ ହସ୍ତରେ କ୍ଷମା ମାଗୁଛି । ଭୁଲ୍ ତୃଟି ଜଣାଇ ଦେଇ କୃତଜ୍ଞ କରିବା ହେବେ ।

ଏକ ତୁଚ୍ଛ-ସେବକ --ସର୍‌ଦାର୍ କିର୍‌ପାଲ୍ ସିଂଘ୍ 'ଡାକୀଆ' ,

ଉର୍ଫ ହରିହର ଡାକୁଆ ,

ଭବାନୀପାଟଣା,

୦୫ /୦୧/୨୦୧୯ ,

(ଦଶମ ଗୁରୁ ଶ୍ରୀ ଗୁରୁ ଗୋବିଂଦ ସିଂଘ ଜୀଙ୍କ ଜନ୍ମ-ଦିୱସ)

-----((((()))))-----

# ਆਨੰਦ ਸਾਹਿਬ ਜੀ ଆନନ୍ଦ୍ ସାହିବ୍ ଜୀ

**ਰਾਮਕਲੀ ਮਹਲਾ ੩ ਅਨੰਦੁ ੴ ੧ਓਂਕਾਰ ਸਤਿਗੁਰ ਪ੍ਰਸਾਦਿ।।**

**ରାମକଲୀ ମହଲା ୩ ଅନଂଦୁ ୧ଓଁ ୧ଓଂକାର ସତିଗୁର ପ୍ରସାଦି ।।**

(ରାମକଲୀ ରାଗରେ ତୃତୀୟ ନାନକ ଗୁରୁ ଅମରଦାସ ଜୀ ରଚିତ)

'ଆନନ୍ଦ' ନାମକ ବାଣୀ

## ।। ੴ ੧ਓਂਕਾਰ ਸਤਗੁਰ ਪ੍ਰਸਾਦ ।।

## ।। ୧ଓଁ ୧ଓଁକାର ସତ୍ଗୁର୍ ପ୍ରସାଦ୍ ।।

*੧) ਅਨੰਦੁ ਭਇਆ ਮੇਰੀ ਮਾਏ ਸਤਿਗੁਰੂ ਮੈ ਪਾਇਆ।। ਸਤਿਗੁਰੁ ਤ ਪਾਇਆ ਸਹਜ ਸੇਤੀ ਮਨਿ ਵਜੀਆ ਵਾਧਾਈਆ।। ਰਾਗ ਰਤਨ ਪਰਵਾਰ ਪਰੀਆ ਸਬਦ ਗਾਵਣ ਆਈਆ।। ਸਬਦੋ ਤ ਗਾਵਹੁ ਹਰੀ ਕੇਰਾ ਮਨਿ ਜਿਨੀ ਵਸਾਇਆ।। ਕਹੈ ਨਾਨਕੁ ਅਨੰਦੁ ਹੋਆ ਸਤਿਗੁਰੂ ਮੈ ਪਾਇਆ।।੧।।*

*---ଅନଂଦୁ ଭଇଆ ମେରୀ ମାଏ ସତିଗୁରୂ ମୈ ପାଇଆ ।। ସତିଗୁରୁ ତ ପାଇଆ ସହଜ ସେତୀ ମନି ୱଜୀଆ ୱାଧାଈଆ ।। ରାଗ ରତନ ପରୱାର ପରୀଆ ସବଦ ଗାୱଣ ଆଈଆ ।। ସବଦୋ ତ ଗାୱହୁ ହରୀ କେରା ମନି ଜିନୀ ୱସାଇଆ ।। କହୈ ନାନକୁ ଅନଂଦୁ ହୋଆ ସତିଗୁରୂ ମୈ ପାଇଆ ।।୧ ।।*

ଆନନ୍ଦ ହୋଇଛି ମୋହର ଗୋ ମାଏ   ସଦ୍ଗୁରୁ ମୁଁ ପାଇଅଛି ।।
ସଦ୍ଗୁରୁ ପାଇଣ ସହଜେ ମୋ ମନେ   ବାଜଇ ଆନନ୍ଦ ବାଦ୍ୟ ।
ପ୍ରଭୁ ସ୍ତୁତି ଗୀତ ଗାଉଛନ୍ତି ଆସି   ସୁରାଗ ରାଗିଣୀ ବୃନ୍ଦ ।।
ଗାଅ ପ୍ରଭୁଗୀତି ମନ ମଧ୍ୟେ ଯିଏ ହରି ନାମ ଥାପିଅଛି ।
କହଇ ନାନକ ଆନନ୍ଦ ହୋଇଛି   ସଦ୍ଗୁରୁ ମୁଁ ପାଇଅଛି ।।୧ ।।

੨) ਏ ਮਨ ਮੇਰਿਆ ਤੂ ਸਦਾ ਰਹੁ ਹਰਿ ਨਾਲੇ।। ਹਰਿ ਨਾਲਿ ਰਹੁ ਤੂ ਮੰਨ ਮੇਰੇ ਦੂਖ ਸਭਿ ਵਿਸਾਰਣਾ।। ਅੰਗੀਕਾਰੁ ਓਹੁ ਕਰੇ ਤੇਰਾ ਕਾਰਜ ਸਭਿ ਸਵਾਰਣਾ।। ਸਭਨਾ ਗਲਾ ਸਮਰਥੁ ਸੁਆਮੀ ਸੋ ਕਿਉ ਮਨਹੁ ਵਿਸਾਰੇ।। ਕਹੈ ਨਾਨਕੁ ਮੰਨ ਮੇਰੇ ਸਦਾ ਰਹੁ ਹਰਿ ਨਾਲੇ।।੨।।

---ଏ ମନ ମେରିଆ ତୂ ସଦା ରହୁ ହରି ନାଲେ ।। ହରି ନାଲି ରହୁ ତୂ ମଂନ ମେରେ ଦୂଖ ସଭି ୱିସାରଣା ।। ଅଂଗୀକାରୁ ଓହୁ କରେ ତେରା କାରଜ ସଭି ସୱାରଣା ।। ସଭନା ଗଲା ସମରଥୁ ସୁଆମୀ ସୋ କିଉ ମନହୁ ୱିସାରେ ।। କହୈ ନାନକୁ ମଂନ ମେରେ ସଦା ରହୁ ହରି ନାଲେ ।।୨ ।।

ସୁମରି ହରି ତୁ, ସଦା ହରି ସଙ୍ଗେ ରହ ଆରେ ମୋର ମନ ।।
ହରି ସଙ୍ଗେ ରହ ଆରେ ମୋର ମନ ସେ ପରା ଦୁଃଖ ନାଶନ ।
ହୁଅଇ ସହାୟ ସିଏ ପରା ତୋର ସବୁ କାର୍ଯ୍ୟ କରେ ପୂର୍ଣ୍ଣ ।।
ସବୁ କରି ପାରେ ଯିଏ ତାକୁ ମନୁ କିଆଁ କରୁ ବିସ୍ମରଣ ।
କହଇ ନାନକ ସଦା ହରି ସଙ୍ଗେ ରହ ଆରେ ମୋର ମନ ।।୨ ।।

੩) ਸਾਚੇ ਸਾਹਿਬਾ ਕਿਆ ਨਾਹੀ ਘਰਿ ਤੇਰੈ।। ਘਰਿ ਤ ਤੇਰੈ ਸਭੁ ਕਿਛੁ ਹੈ ਜਿਸੁ ਦੇਹਿ ਸੁ ਪਾਵਏ।। ਸਦਾ ਸਿਫਤਿ ਸਲਾਹ ਤੇਰੀ ਨਾਮੁ ਮਨਿ ਵਸਾਵਏ।। ਨਾਮੁ ਜਿਨ ਕੈ ਮਨਿ ਵਸਿਆ ਵਾਜੇ ਸਬਦ ਘਨੇਰੇ।। ਕਹੈ ਨਾਨਕੁ ਸਚੇ ਸਾਹਿਬ ਕਿਆ ਨਾਹੀ ਘਰਿ ਤੇਰੈ।।੩।।

--- ସାଚେ ସାହିବା କିଆ ନାହୀ ଘରି ତେରୈ ।। ଘରି ତ ତେରୈ ସଭୁ କିଛୁ ହୈ ଜିସୁ ଦେହି ସୁ ପାୱଏ ।। ସଦା ସିଫତି ସଲାହ ତେରୀ ନାମୁ ମନି ୱସାୱଏ ।। ନାମୁ ଜିନ କୈ ମନି ୱସିଆ ୱାଜେ ସବଦ ଘନେରେ ।। କହୈ ନାନକୁ ସଚେ ସାହିବ କିଆ ନାହୀ ଘରି ତେରୈ ।।୩ ।।

ସତ୍ୟ ସନାତନ ହେ  ସଚ୍ଚା ସାହିବ   କିବା ନାହିଁ ଘରେ ତୋର  ।।
ଘରେ ତ ତୋହର ସବୁ କିଛି ଅଛି   ଯାହାକୁ ଦେଉ ସେ ପାଏ  ।
ନାମକୁ ତୋହର ରଖି ମନେ ତା'ର   ସଦା ତୋର ଗୁଣ ଗାଏ ।।
ତୋ ନାମ ଯାହାର ମନେ ରହେ ତାକୁ   ଶୁଭେ କେତେ ସୁଖ ସ୍ୱର  ।
କହଇ ନାନକ ହେ ସଚ୍ଚା ସାହିବ  କି ବା ନାହିଁ ଘରେ ତୋର ।।୩।।

*੪) ਸਾਚਾ ਨਾਮੁ ਮੇਰਾ ਆਧਾਰੋ।। ਸਾਚੁ ਨਾਮੁ ਅਧਾਰੁ ਮੇਰਾ ਜਿਨਿ ਭੁਖਾ ਸਭਿ ਗਵਾਈਆ।। ਕਰਿ ਸਾਂਤਿ ਸੁਖ ਮਨਿ ਆਇ ਵਸਿਆ ਜਿਨਿ ਇਛਾ ਸਭਿ ਪੁਜਾਈਆ।। ਸਦਾ ਕੁਰਬਾਣੁ ਕੀਤਾ ਗੁਰੂ ਵਿਟਹੁ ਜਿਸ ਦੀਆ ਏਹਿ ਵਡਿਆਈਆ।। ਕਹੈ ਨਾਨਕੁ ਸੁਣਹੁ ਸੰਤਹੁ ਸਬਦਿ ਧਰਹੁ ਪਿਆਰੋ।। ਸਾਚਾ ਨਾਮੁ ମੇਰਾ ਆਧਾਰੋ।।੪।।*

*---ସାଚା ନାମୁ ମେରା ଆଧାରୋ ।। ସାଚୁ ନାମୁ ଅଧାରୁ ମେରା ଜିନି ଭୁଖା ସଭି ଗୱାଈଆ ।। କରି ସାଂତି ସୁଖ ମନି ଆଇ ୱସିଆ ଜିନି ଇଛା ସଭି ପୁଜାଈଆ ।। ସଦା କୁରବାଣୁ କୀତା ଗୁରୁ ୱିଟହୁ ଜିସ ଦୀଆ ଏହି ୱଡିଆଈଆ ।। କହୈ ନାନକୁ ସୁଣହୁ ସଂତହୁ ସବଦି ଧରହୁ ପିଆରୋ ।। ସାଚା ନାମୁ ମେରା ଆଧାରୋ ।।୪।।*

ସଚ୍ଚା ନାମ ମୋ ଆଧାର  ।।
ସଚ୍ଚା ନାମ ମୋର ଆଧାର , ଯେ ସବୁ     ଲାଳସା କରିଛି ଦୂର  ।
ସୁଖ ଶାନ୍ତି ଦେଇ କାମନା ପୂରାଇ   ମୋ ମନେ କରିଛି ଘର  ।।
ସଦା ଉତ୍ସର୍ଗ ମୁଁ ସେ ଗୁରୁ ନିମନ୍ତେ  ଯା ଲାଗି ବଡ଼ାଇ ମୋର  ।
କହଇ ନାନକ ଶୁଣ ସନ୍ଥ ଜନେ ନାମକୁ ଆଶ୍ରୟ କର  ।।
ସଚ୍ଚା ନାମ ମୋ ଆଧାର  ।।୪।। (ଆଧାର:-ଆଶ୍ରୟ)

*੫) ਵਾਜੇ ਪੰਚ ਸਬਦ ਤਿਤੁ ਘਰਿ ਸਭਾਗੈ।। ਘਰਿ ਸਭਾਗੈ ਸਬਦ ਵਾਜੇ ਕਲਾ ਜਿਤੁ ਘਰਿ ਧਾਰੀਆ।। ਪੰਚ ਦੂਤ ਤੁਧੁ ਵਸਿ ਕੀਤੇ ਕਾਲੁ ਕੰਟਕੁ ਮਾਰਿਆ।। ਧੁਰਿ*

*ਕਰਮਿ ਪਾਇਆ ਤੁਧੁ ਜਿਨ ਕਉ ਸਿ ਨਾਮਿ ਹਰਿ ਕੈ ਲਾਗੇ।। ਕਹੈ ਨਾਨਕ ਤਹ ਸੁਖੁ ਹੋਆ ਤਿਤੁ ਘਰਿ ਅਨਹਦ ਵਾਜੇ।।੫।।*

*---ୱାଜେ ପଂଚ ସବଦ ତିତୁ ଘରି ସଭାଗୈ।। ଘରି ସଭାଗୈ ସବଦ ୱାଜେ କଳା ଜିତୁ ଘରି ଧାରୀଆ।। ପଂଚ ଦୂତ ତୁଧୁ ୱସି କୀତେ କାଲୁ କଂଟକୁ ମାରିଆ।। ଧୁରି କରମି ପାଇଆ ତୁଧୁ ଜିନ କଉ ସି ନାମି ହରି କୈ ଲାଗେ।। କହୈ ନାନକ ତହ ସୁଖୁ ହୋଆ ତିତୁ ଘରି ଅନହଦ ୱାଜେ।।୫।।*

ଭାଗ୍ୟବାନ ହୃଦ ମଧ୍ୟେ ସୌଭାଗ୍ୟର  ପଞ୍ଚବାଦ୍ୟ ବାଜୁଥାଇ ।।
ଭାଗ୍ୟବାନ ହୃଦେ ବାଦ୍ୟ ବାଜେ ପ୍ରଭୁ  ଯା ହୃଦେ ଦେଉ ତୁ ବଳ ।
ପଞ୍ଚଶତ୍ରୁ ତା'ର ବଶ କରି ତୁହି   ମୃତ୍ୟୁ ଭୟ କରୁ ଦୂର ।।
ହରି ନାମେ ରତ ହୁଅଇ ସେ ଯାହା  ଭାଗ୍ୟେ ଲେଖି ଅଛୁ ତୁହି ।
ସୁଖୀ ହୁଅଇ ସେ ହୃଦୟେ ତାହାର   ଅନାହତ ବାଜୁ ଥାଇ ।।୫।।

*(<u>ପଞ୍ଚବାଦ୍ୟ :</u>-- ୧-ତାର ବା ତନ୍ତୁ ବାଦ୍ୟ ,୨- ଚର୍ମ ମଣ୍ଡିତ ମୃଦଙ୍ଗ ଆଦି ବାଦ୍ୟ, ୩-ଘଣ୍ଟ ଆଦି ଧାତୁ ବାଦ୍ୟ, ୪- ଘଟ ବାଦ୍ୟ, ୫- ବଂଶୀ, ମହୁରୀ,ଶହନାଇ, ଆଦି ଫୁଙ୍କି ବଜା ଯାଉ ଥିବା ବାଦ୍ୟ)*

*<u>ପଞ୍ଚଶତ୍ରୁ :</u>- କାମ, କ୍ରୋଧ, ଲୋଭ, ମଦ, ମାତ୍ସର୍ଯ୍ୟ*

*୬) ਸਾਚੀ ਲਿਵੈ ਬਿਨੁ ਦੇਹ ਨਿਮਾਣੀ।। ਦੇਹ ਨਿਮਾਣੀ ਲਿਵੈ ਬਾਝਹੁ ਕਿਆ ਕਰੇ ਵੇਚਾਰੀਆ।। ਤੁਧੁ ਬਾਝੁ ਸਮਰਥ ਕੋਇ ਨਾਹੀ ਕ੍ਰਿਪਾ ਕਰਿ ਬਨਵਾਰੀਆ।। ਏਸ ਨਉ ਹੋਰੁ ਥਾਉ ਨਾਹੀ ਸਬਦਿ ਲਾਗਿ ਸਵਾਰੀਆ।। ਕਹੈ ਨਾਨਕ ਲਿਵੈ ਬਾਝਹੁ ਕਿਆ ਕਰੇ ਵੇਚਾਰੀਆ।।੬।।*

*---ସାଚୀ ଲିୱୈ ବିନୁ ଦେହ ନିମାଣୀ।। ଦେହ ନିମାଣୀ ଲିୱୈ ବାଝହୁ କିଆ କରେ ୱେଚାରୀଆ।। ତୁଧୁ ବାଝୁ ସମରଥ କୋଇ ନାହୀ କ୍ରିପା କରି ବନୱାରୀଆ।। ଏସ ନଉ ହୋରୁ ଥାଉ ନାହୀ ସବଦି ଲାଗି ସୱାରୀଆ।।*

*କହୈ ନାନକ ଲିଙ୍ଖୈ ବାଝହୁ କିଆ କରେ ୱେଚାରୀଆ । ।୬ । ।*

ତୋ ସଙ୍ଗତେ ପ୍ରଭୁ ସଚ୍ଚା ପ୍ରୀତି ବିନା   ବ୍ୟର୍ଥ ଅଟେ ଏହି ନଶ୍ୱର ଦେହ । ।
ବ୍ୟର୍ଥ ଏହି ଦେହ ସଚ୍ଚା ପ୍ରୀତି ବିନା  ଏ ବିଚରା ଅବା କରିବ କିସ  ।
ତୋ ବିନା ସମର୍ଥ ନାହିଁ ଆଉ କିଏ  କୃପା କର ପ୍ରଭୁ ହେ ପରମେଶ । ।
ପ୍ରଭୁ ବାଣୀ ଶୁଣି ତରିବ ଏ ଦେହ   ନାହିଁ କାହିଁ ଆଉ ତାହାର ବାସ  ।
କହଇ ନାନକ ସଚ୍ଚା ପ୍ରୀତି ବିନା ଏ ଦେହ ବିଚରା କରିବ କିସ  । ।୬ । ।

*੭) ਆਨੰਦੁ ਆਨੰਦੁ ਸਭੁ ਕੋ ਕਹੈ ਆਨੰਦੁ ਗੁਰੂ ਤੇ ਜਾਣਿਆ।। ਜਾਣਿਆ ਆਨੰਦੁ ਸਦਾ ਗੁਰ ਤੇ ਕ੍ਰਿਪਾ ਕਰੇ ਪਿਆਰਿਆ।। ਕਰਿ ਕਿਰਪਾ ਕਿਲਵਿਖ ਕਟੇ ਗਿਆਨ ਅੰਜਨੁ ਸਾਰਿਆ।। ਅੰਦਰਹੁ ਜਿਨ ਕਾ ਮੋਹੁ ਤੁਟਾ ਤਿਨ ਕਾ ਸਬਦੁ ਸਚੈ ਸਵਾਰਿਆ।। ਕਹੈ ਨਾਨਕ ਏਹੁ ਅਨੰਦੁ ਹੈ ਆਨੰਦੁ ਗੁਰ ਤੇ ਜਾਣਿਆ।।੭।।*

*---ଆନଂଦୁ ଆନଂଦୁ ସଭୁ କୋ କହୈ ଆନଂଦୁ ଗୁରୁ ତେ ଜାଣିଆ । । ଜାଣିଆ ଆନଂଦୁ ସଦା ଗୁର ତେ କ୍ରିପା କରେ ପିଆରିଆ । । କରି କିରପା କିଲୱିଖ କଟେ ଗିଆନ ଅଂଜନୁ ସାରିଆ । । ଅଂଦରହୁ ଜିନ କା ମୋହୁ ତୁଟା ତିନ କା ସବଦୁ ସଚୈ ସୱାରିଆ । । କହୈ ନାନକ ଏହୁ ଅନଂଦୁ ହୈ ଆନଂଦୁ ଗୁର ତେ ଜାଣିଆ । ।୭ । ।*

ଆନନ୍ଦ ଆନନ୍ଦ କହନ୍ତି ସଭିଏଁ   ଗୁରୁଠୁଁ ଆନନ୍ଦ ଜ୍ଞାନ ମିଳଇ  । ।
ଗୁରୁକୃପା କଲେ ପ୍ରିୟ ଜନେ ସଦା  ଗୁରୁଠୁଁ ମିଳଇ ଆନନ୍ଦ ଜ୍ଞାନ   ।
କୃପା କଲେ ସିଏ ନାଶ ଯାଏ ପାପ   ଚକ୍ଷୁକୁ ମିଳଇ ଜ୍ଞାନ ଅଞ୍ଜନ । ।
ସଚ୍ଚା ପ୍ରଭୁ ତା'ର କରଇ ଉଦ୍ଧାର    ଅନ୍ତରୁ ଯାହାର ମୋହ ତୁଟଇ  ।
କହଇ ନାନକ ଏହା ହିଁ ଆନନ୍ଦ   ଗୁରୁଠାରୁ ଯାହା ମୁଁ ଜାଣିଲଇଁ  । ।୭ । ।

੮) ਬਾਬਾ ਜਿਸੁ ਤੂ ਦੇਹਿ ਸੋਈ ਜਨੁ ਪਾਵੈ।। ਪਾਵੈ ਤ ਸੋ ਜਨੁ ਦੇਹਿ ਜਿਸ ਨੋ ਹੋਰਿ ਕਿਆ ਕਰਹਿ ਵੇਚਾਰਿਆ।। ਇਕਿ ਭਰਮ ਭੂਲੇ ਫਿਰਹਿ ਦਹ ਦਿਸਿ ਇਕਿ ਨਾਮਿ ਲਾਗਿ ਸਵਾਰਿਆ।। ਗੁਰਪਰਸਾਦੀ ਮਨੁ ਭਇਆ ਨਿਰਮਲੁ ਜਿਨਾ ਭਾਣਾ ਭਾਵਏ।। ਕਹੈ ਨਾਨਕੁ ਜਿਸੁ ਦੇਹਿ ਪਿਆਰੇ ਸੋਈ ਜਨੁ ਪਾਵਏ।।੮।।

---ବାବା ଜିସୁ ତୂ ଦେହି ସୋଇ ଜନୁ ପାୱୈ।। ପାୱୈ ତ ସୋ ଜନୁ ଦେହି ଜିସ ନୋ ହୋରି କିଆ କରହି ୱେଚାରିଆ।। ଇକି ଭରମ ଭୂଲେ ଫିରହି ଦହ ଦିସି ଇକି ନାମି ଲାଗି ସୱାରିଆ।। ଗୁରପରସାଦୀ ମନୁ ଭଇଆ ନିରମଲୁ ଜିନା ଭାଣା ଭାୱଏ।। କହୈ ନାନକୁ ଜିସୁ ଦେହି ପିଆରେ ସୋଇ ଜନୁ ପାୱଏ।।୮।।

ଦେଉ ତୁ ଯାହାକୁ ପ୍ରଭୁ ପରମେଶ  ସେହି ଏକା ପାଇ ପାରେ ଆନନ୍ଦ ।।
ସେହି  ଏକା ପାଏ ଦେଉତୁ ଯାହାକୁ   କି କରିବେ ଆଉ ବିଚରା ଯେତେ ।
ଭ୍ରମନ୍ତି ଭ୍ରମରେ ଦଶ ଦିଗେ କେତେ  ଧରି ତୋର ନାମ ତରନ୍ତି କେତେ ।।
ଯିଏ ତୋର ଆଜ୍ଞା ମାନଇ , ତା ଚିତ୍ତ  ଗୁରୁ ପରସାଦେ ହୁଅଇ ଶୁଦ୍ଧ ।
କହଇ ନାନକ ଦେଉ ତୁ ଯାହାକୁ  ସେହି ଏକା ପାଇ ଥାଇ ଆନନ୍ଦ ।।୮।।

੯) ਆਵਹੁ ਸੰਤ ਪਿਆਰਿਹੋ ਅਕਥ ਕੀ ਕਰਹ ਕਹਾਣੀ।। ਕਰਹ ਕਹਾਣੀ ਅਕਥ ਕੇਰੀ ਕਿਤੁ ਦੁਆਰੈ ਪਾਈਐ।। ਤਨੁ ਮਨੁ ਧਨੁ ਸਭੁ ਸਉਪਿ ਗੁਰ ਕਉ ਹੁਕਮਿ ਮੰਨਿਐ ਪਾਈਐ।। ਹੁਕਮੁ ਮੰਨਿਹੁ ਗੁਰੂ ਕੇਰਾ ਗਾਵਹੁ ਸਚੀ ਬਾਣੀ।। ਕਹੈ ਨਾਨਕੁ ਸੁਣਹੁ ਸੰਤਹੁ ਕਥਿਹੁ ਅਕਥ ਕਹਾਣੀ।।੯।।

--- ଆୱହୁ ସଂତ ପିଆରିହୋ ଅକଥ କୀ କରହ କହାଣୀ।। କରହ କହାଣୀ ଅକଥ କେରୀ କିତୁ ଦୁଆରୈ ପାଈଐ।। ତନୁ ମନୁ ଧନୁ ସଭୁ ସଉପି ଗୁର କଉ ହୁକମି ମଂନିଐ ପାଈଐ।। ହୁକମୁ ମଂନିହୁ ଗୁରୂ କେରା ଗାୱହୁ ସଚୀ ବାଣୀ।। କହୈ ନାନକୁ ସୁଣହୁ ସଂତହୁ କଥିହୁ ଅକଥ କହାଣୀ।।୯।।

ଆସ ପ୍ରିୟ ଆସ ସନ୍ଥ ଜନ ଯେତେ  କୁହ ସେ ଅକଥ୍ୟ ପ୍ରଭୁର କଥା । ।
କୁହ କଥା ସେହି ଅକଥ୍ୟ ପ୍ରଭୁର  କୁହ କେଉଁ ପରି ତାକୁ ପାଇବା ।
ପାଇବା , ଗୁରୁକୁ ତନୁ ମନ ଧନ  ସବୁ ଦେଇ ଯଦି ଆଜ୍ଞା ମାନିବା । ।
ଗୁରୁ ଆଜ୍ଞା ମାନି ଚଳ ହେ ସତତ ସେ ସଚ୍ଚା ପ୍ରଭୁର ଗାଅ ହେ ଗାଥା  ।
କହଇ ନାନକ ଶୁଣ ସନ୍ଥ ଜନେ କୁହ ସେ ଅକଥ୍ୟ ପ୍ରଭୁର କଥା  । ।୯ । ।

*੧੦) ਏ ਮਨ ਚੰਚਲਾ ਚਤੁਰਾਈ ਕਿਨੈ ਨ ਪਾਇਆ।। ਚਤੁਰਾਈ ਨ ਪਾਇਆ ਕਿਨੈ ਤੂ ਸੁਣਿ ਮੰਨ ਮੇਰਿਆ।। ਏਹ ਮਾਇਆ ਮੋਹਣੀ ਜਿਨਿ ਏਤੁ ਭਰਮਿ ਭੁਲਾਇਆ।। ਮਾਇਆ ਤ ਮੋਹਣੀ ਤਿਨੈ ਕੀਤੀ ਜਿਨਿ ਠਗਉਲੀ ਪਾਈਆ।। ਕੁਰਬਾਣੁ ਕੀਤਾ ਤਿਸੈ ਵਿਟਹੁ ਜਿਨਿ ਮੋਹੁ ਮੀਠਾ ਲਾਇਆ।। ਕਹੈ ਨਾਨਕੁ ਮਨ ਚੰਚਲ ਚਤੁਰਾਈ ਕਿਨੈ ਨ ਪਾਇਆ।।੧੦।।*

*--- ଏ ମନ ଚଂଚଲା ଚତୁରାଈ କିନୈ ନ ପାଇଆ । । ଚତୁରାଈ ନ ପାଇଆ କିନୈ ତୂ ସୁଣି ମଂନ ମେରିଆ । । ଏହ ମାଇଆ ମୋହଣୀ ଜିନି ଏତୁ ଭରମି ଭୁଲାଇଆ । । ମାଇଆ ତ ମୋହଣୀ ତିନୈ କୀତୀ ଜିନି ଠଗଉଲୀ ପାଈଆ । । କୁରବାଣୁ କୀତା ତିସୈ ୱିଟହୁ ଜିନି ମୋହୁ ମୀଠା ଲାଇଆ । । କହୈ ନାନକୁ ମନ ଚଂଚଲ ଚତୁରାଈ କିନୈ ନ ପାଇଆ । ।୧୦ । ।*

ଏ ଚଞ୍ଚଳ ମନ ! ପରମ ପ୍ରଭୁକୁ  ପାଇ ନାହିଁ କିଏ ଚତୁର ପଣେ  ।
ଚତୁର ପଣରେ ପାଇ ନାହିଁ କିଏ  ମନ ମୋର ଶୁଣ ତୋର ଶ୍ରବଣେ  । ।
ଏହି ମାୟା ପରା ଅଟଇ ମୋହିନୀ  ଭ୍ରମରେ ଭ୍ରମାଇ ଅଛି ସବୁକୁ ।
ମାୟା ତ ମୋହିନୀ ଠକୁଅଛି ପୁଣି  ବାଟବଣା କରୁ ଅଛି ପ୍ରାଣୀଙ୍କୁ । ।
ଉତ୍ସର୍ଗ କରଇ ତା'ଠାରେ ମୋତେ ମୁଁ  ମୋହମିଠା ଯିଏ ଦୂରେଇ ଜାଣେ  ।
କହଇ ନାନକ ଏ ଚଞ୍ଚଳ ମନ  ପାଇ ନାହିଁ କିଏ ଚତୁର ପଣେ । ।୧୦ । ।

*((ଅକଥ୍ୟ ପ୍ରଭୁ :-- ଅବର୍ଣ୍ଣନୀୟ ପ୍ରଭୁ, ସେହି ପ୍ରଭୁ ଯାହାର ବର୍ଣ୍ଣନା କରାଯାଇ ପାରେ ନାହିଁ ।))*

੧੧) ਏ ਮਨ ਪਿਆਰਿਆ ਤੂ ਸਦਾ ਸਚੁ ਸਮਾਲੇ।। ਏਹੁ ਕੁਟੰਬੁ ਤੂ ਜਿ ਦੇਖਦਾ ਚਲੈ ਨਾਹੀ ਤੇਰੈ ਨਾਲੇ।। ਸਾਥਿ ਤੇਰੈ ਚਲੈ ਨਾਹੀ ਤਿਸੁ ਨਾਲਿ ਕਿਉ ਚਿਤੁ ਲਾਈਐ।। ਐਸਾ ਕੰਮੁ ਮੂਲੇ ਨ ਕੀਚੈ ਜਿਤੁ ਅੰਤਿ ਪਛੋਤਾਈਐ।। ਸਤਿਗੁਰੂ ਕਾ ਉਪਦੇਸੁ ਸੁਣਿ ਤੂ ਹੋਵੈ ਤੇਰੈ ਨਾਲੇ।। ਕਹੈ ਨਾਨਕੁ ਮਨ ਪਿਆਰੇ ਤੂ ਸਦਾ ਸਚੁ ਸਮਾਲੇ।।੧੧।।

--- ଏ ମନ ପିଆରିଆ ତୂ ସଦା ସଚୁ ସମାଲେ।। ଏହୁ କୁଟଂବୁ ତୂ ଜି ଦେଖଦା ଚଲୈ ନାହୀ ତେରୈ ନାଲେ।। ସାଥି ତେରୈ ଚଲୈ ନାହୀ ତିସୁ ନାଲି କିଉ ଚିତୁ ଲାଈଐ।। ଐସା କଂମୁ ମୂଲେ ନ କୀଚୈ ଜିତୁ ଅଂତି ପଛୋତାଈଐ।। ସତିଗୁରୂ କା ଉପଦେସୁ ସୁଣି ତୂ ହୋୱୈ ତେରୈ ନାଲେ।। କହୈ ନାନକୁ ମନ ପିଆରେ ତୂ ସଦା ସଚୁ ସମାଲେ।।୧୧।।

ପ୍ରିୟ ମନ ମୋର ସଦା ପ୍ରଭୁ ସ୍ମର  ସତତ ସତ୍ୟରେ ରହ ଅଟଳ ।
ଯତନ କରୁ ତୁ ଯେଉଁ କୁଟୁମ୍ବର  କେବେ ହେଁ ନ ଯିବ ସଙ୍ଗରେ ତୋର ।।
ସଙ୍ଗରେ ତୋହର ଯିବ ନାହିଁ ଯିଏ ମନ ଲଗାଉ ତୁ କିଆଁ ତା ସାଥେ ।
ଏହି ପରି କାର୍ଯ୍ୟ କର ନାହିଁ କେବେ  ଯା ଲାଗି ପସ୍ତେଇ ହେବୁ ପଛନ୍ତେ ।।
ସଦ୍ଗୁରୁ ନିକଟୁ ଶୁଣ ଉପଦେଶ   ତାହା ହେବ ସଦା ସହାୟ ତୋର ।
କହଇ ନାନକ ପ୍ରିୟ ମନ ମୋର ସତତ ସତ୍ୟରେ ରହ ଅଟଳ ।।୧୧।।

੧੨) ਅਗਮ ਅਗੋਚਰਾ ਤੇਰਾ ਅੰਤੁ ਨ ਪਾਇਆ।। ਅੰਤੋ ਨ ਪਾਇਆ ਕਿਨੈ ਤੇਰਾ ਆਪਣਾ ਆਪੁ ਤੂ ਜਾਣਹੇ।। ਜੀਅ ਜੰਤ ਸਭਿ ਖੇਲੁ ਤੇਰਾ ਕਿਆ ਕੋ ਆਖਿ ਵਖਾਣਏ।। ਆਖਹਿ ਤ ਵੇਖਹਿ ਸਭੁ ਤੂਹੈ ਜਿਨਿ ਜਗਤੁ ਉਪਾਇਆ।। ਕਹੈ ਨਾਨਕੁ ਤੂ ਸਦਾ ਅਗੰਮੁ ਹੈ ਤੇਰਾ ਅੰਤੁ ਨ ਪਾਇਆ।।੧੨।।

---ଅଗମ ଅଗୋଚରା ତେରା ଅଂତୁ ନ ପାଇଆ।। ଅଂତୋ ନ ପାଇଆ କିନୈ ତେରା ଆପଣା ଆପୁ ତୂ ଜାଣହେ।। ଜୀଅ ଜଂତ ସଭି ଖେଲୁ ତେରା କିଆ କୋ ଆଖି ୱଖାଣଏ।। ଆଖହି ତ ୱେଖହି ସଭୁ ତୂହୈ ଜିନି ଜଗତୁ ଉପାଇଆ।। କହୈ ନାନକୁ ତୂ ସଦା ଅଗଂମୁ ହୈ ତେରା ଅଂତୁ ନ ପାଇଆ।।୧୨।।

ତୁହି ତ ଅଗମ୍ୟ ଅଗୋଚର ପ୍ରଭୁ  ଅନ୍ତ ପାଇ ନାହିଁ କେହି ତୋହର ।।
କେହି ତ ତୋହର ଅନ୍ତ ପାଇ ନାହିଁ  ଆପଣାକୁ ଆପେ ଜାଣିଛୁ ତୁହି ।
ଜୀବ ଯନ୍ତୁ ଯେତେ ସବୁ ତୋର ଖେଳ  କିଏ ବା ତୋ କଥା ପାରିବ କହି ।।
କହୁ ଆଉ ଦେଖୁ ତୁହି ଏକା ଜଣେ  ତୁହିତ ଗଢ଼ିଛୁ ସାରା ସଂସାର ।
କହଇ ନାନକ ତୁ ସଦା ଅଗମ୍ୟ  ଅନ୍ତ ପାଇ ନାହିଁ କେହି ତୋହର ।।୧୨।।

*੧੩) ਸੁਰਿ ਨਰ ਮੁਨਿ ਜਨ ਅੰਮ੍ਰਿਤੁ ਖੋਜਦੇ ਸੁ ਅੰਮ੍ਰਿਤੁ ਗੁਰ ਤੇ ਪਾਇਆ।। ਪਾਇਆ ਅੰਮ੍ਰਿਤੁ ਗੁਰਿ ਕ੍ਰਿਪਾ ਕੀਨੀ ਸਚਾ ਮਨਿ ਵਸਾਇਆ।। ਜੀਅ ਜੰਤ ਸਭਿ ਤੁਧੁ ਉਪਾਏ ਇਕਿ ਵੇਖਿ ਪਰਸਣਿ ਆਇਆ।। ਲਬੁ ਲੋਭੁ ਅਹੰਕਾਰੁ ਚੁਕਾ ਸਤਿਗੁਰੂ ਭਲਾ ਭਾਇਆ।। ਕਹੈ ਨਾਨਕੁ ਜਿਸ ਨੋ ਆਪਿ ਤੁਠਾ ਤਿਨਿ ਅੰਮ੍ਰਿਤੁ ਗੁਰ ਤੇ ਪਾਇਆ।।੧੩।।*
*---ସୁରି ନର ମୁନି ଜନ ଅଂମ୍ରିତୁ ଖୋଜଦେ ସୁ ଅଂମ୍ରିତୁ ଗୁର ତେ ପାଇଆ ।। ପାଇଆ ଅଂମ୍ରିତୁ ଗୁରି କ୍ରିପା କୀନୀ ସଚା ମନି ୱସାଇଆ ।। ଜୀଅ ଜଂତ ସଭି ତୁଧୁ ଉପାଏ ଇକି ୱେଖି ପରସଣି ଆଇଆ ।। ଲବୁ ଲୋଭୁ ଅହଂକାରୁ ଚୁକା ସତିଗୁରୂ ଭଲା ଭାଇଆ ।। କହୈ ନାନକୁ ଜିସ ନୋ ଆପି ତୁଠା ତିନି ଅଂମ୍ରିତୁ ଗୁର ତେ ପାଇଆ ।।୧୩।।*

ସୁର ନର ମୁନି ଅମୃତ ଖୋଜନ୍ତି  ପାଇଛି ମୁଁ ଗୁରୁଠାରୁ ଅମୃତ ।।
ଅମୃତ ପାଇଛି ଗୁରୁକୃପା ବଳେ  ବସାଇଛି ନାମ ମନରେ ଯିଏ ।
ଜୀବ ଜନ୍ତୁ ସବୁ ତୁମରି ସର୍ଜନା ଗୁରୁ ଆଶ୍ରା କରେ କଦବା କିଏ ।।
ଲୋଭ ଅହଂକାର ଦୂର ହୁଏ ତା'ର ପ୍ରିୟ ଲାଗେ ଯାକୁ ଗୁରୁସଙ୍ଗତ ।
କହଇ ନାନକ ପ୍ରଭୁ ତୋଷ ଯା'ରେ ପାଇଛି ସେ ଗୁରୁଠାରୁ ଅମୃତ ।।୧୩।।

*੧੪) ਭਗਤਾ ਕੀ ਚਾਲ ਨਿਰਾਲੀ।। ਚਾਲਾ ਨਿਰਾਲੀ ਭਗਤਾਹ ਕੇਰੀ ਬਿਖਮ ਮਾਰਗਿ ਚਲਣਾ।। ਲਬੁ ਲੋਭੁ ਅਹੰਕਾਰੁ ਤਜਿ ਤ੍ਰਿਸਨਾ ਬਹੁਤੁ ਨਾਹੀ ਬੋਲਣਾ।। ਖੰਨਿਅਹੁ*

ਤਿਖੀ ਵਾਲਹੁ ਨਿਕੀ ਏਤੁ ਮਾਰਗਿ ਜਾਣਾ।। ਗੁਰਪਰਸਾਦੀ ਜਿਨੀ ਆਪੁ ਤਜਿਆ ਹਰਿ ਵਾਸਨਾ ਸਮਾਣੀ।। ਕਹੈ ਨਾਨਕੁ ਚਾਲ ਭਗਤਾ ਜੁਗਹੁ ਜੁਗੁ ਨਿਰਾਲੀ।।੧੪।।

---ଭଗତା କୀ ଚାଲ ନିରାଳୀ।। ଚାଲା ନିରାଳୀ ଭଗତାହ କେରୀ ବିଖମ ମାରଗି ଚଲଣା।। ଲବୁ ଲୋଭୁ ଅହଂକାରୁ ତଜି ତ୍ରିସନା ବହୁତୁ ନାହୀ ବୋଲଣା।। ଖଂନିଅହୁ ତିଖୀ ୱାଲହୁ ନିକୀ ଏତୁ ମାରଗି ଜାଣା।। ଗୁରପରସାଦୀ ଜିନୀ ଆପୁ ତଜିଆ ହରି ୱାସନା ସମାଣୀ।। କହୈ ନାନକୁ ଚାଲ ଭଗତା ଜୁଗହୁ ଜୁଗୁ ନିରାଳୀ।।୧୪।।

ସବୁ ବେଳେ ଏଇ ଜଗତ ମଧ୍ୟରେ ଭକ୍ତଙ୍କ ଚଳଣି ବଡ଼ ଅଦ୍ଭୁତ ।
ବଡ଼ ଅଦଭୁତ ଭକ୍ତଙ୍କ ଚଳଣି ଚଲନ୍ତି ବିଷମ ପଥେ ସତତ ।।
ତେଜି ପ୍ରଲୋଭନ ଅହଂକାର ତୃଷ୍ଣା ନ କହନ୍ତି କେବେ ବଡ଼ିମା କରି ।
ଖଂଣ୍ଡାଠାରୁ ତୀକ୍ଷ୍ଣ କେଶଠାରୁ ସୂକ୍ଷ୍ମ ବିଚିତ୍ର ମାର୍ଗରେ ଥାଆନ୍ତି ଚାଲି ।।
ଗୁରୁ ପରସାଦେ ଅହଂ ଯେ ତେଜଇ ହରି ପ୍ରେମ ହୁଏ ତା ହୃଦେ ଯୁକ୍ତ ।
କହଇ ନାନକ ଯୁଗେ ଯୁଗେ ଅଟେ ଭକ୍ତଙ୍କ ଚଳଣି ବଡ଼ ଅଦ୍ଭୁତ ।।୧୪।।

੧੫) ਜਿਉ ਤੂ ਚਲਾਇਹਿ ਤਿਵ ਚਲਹ ਸੁਆਮੀ ਹੋਰੁ ਕਿਆ ਜਾਣਾ ਗੁਣ ਤੇਰੇ।। ਜਿਵ ਤੂ ਚਲਾਇਹਿ ਤਿਵੈ ਚਲਹ ਜਿਨਾ ਮਾਰਗਿ ਪਾਵਹੇ।। ਕਰਿ ਕਿਰਪਾ ਜਿਨ ਨਾਮਿ ਲਾਇਹਿ ਸਿ ਹਰਿ ਹਰਿ ਸਦਾ ਧਿਆਵਹੇ।। ਜਿਸਨੋ ਕਥਾ ਸੁਣਾਇਹਿ ਆਪਣੀ ਸਿ ਗੁਰ ਦੁਆਰੈ ਸੁਖੁ ਪਾਵਹੇ।। ਕਹੈ ਨਾਨਕੁ ਸਚੇ ਸਾਹਿਬ ਜਿਉ ਭਾਵੈ ਤਿਵੈ ਚਲਾਵਹੇ।।੧੫।।

---ଜିଉ ତୂ ଚଳାଇହି ତିୱ ଚଲହ ସୁଆମୀ ହୋରୁ କିଆ ଜାଣା ଗୁଣ ତେରେ।। ଜିୱ ତୂ ଚଳାଇହି ତିୱୈ ଚଲହ ଜିନା ମାରଗି ପାୱହେ।। କରି କିରପା ଜିନ ନାମି ଲାଇହି ସି ହରି ହରି ସଦା ଧିଆୱହେ।। ଜିସନୋ କଥା ସୁଣାଇହି ଆପଣୀ ସି ଗୁର ଦୁଆରୈ ସୁଖୁ ପାୱହେ।। କହୈ ନାନକୁ ସଚେ ସାହିବ ଜିଉ ଭାୱୈ ତିୱୈ ଚଲାୱହେ।।୧୫।।

କେଉଁ ଗୁଣ ଆଉ କହିବି ତୋହର ଯେମିତି ଚଳାଉ ସେମିତି ଚଳେ ।।
ଯେମିତି ଚଳାଉ ସେମିତି ଚଳଇ ଯେଉଁ ଶୁଭ ମାର୍ଗେ ଚଳାଉ ତୁହି ।
କରି କୃପା ଯା'ରେ ଦେଉ ନାମ ଦାନ ହରି ହରି ଧ୍ୟାନ ସେ କରୁଥାଇ ।।
ନିଜ କଥା ତୁହି ଶୁଣାଉ ଯାହାକୁ ସୁଖ ପାଏ ସିଏ ଗୁରୁ ଦୁଆରେ ।
କହଇ ନାନକ ହେ ସଚ୍ଚା ସାହିବ ଚଳାଉ ଥାଉ ତୁ ତୋ ମରଜିରେ ।।୧୫।।

*੧੬) ਏਹੁ ਸੋਹਿਲਾ ਸਬਦੁ ਸੁਹਾਵਾ।। ਸਬਦੋ ਸੁਹਾਵਾ ਸਦਾ ਸੋਹਿਲਾ ਸਤਿਗੁਰੂ ਸੁਣਾਇਆ।। ਏਹੁ ਤਿਨ ਕੈ ਮੰਨਿ ਵਸਿਆ ਜਿਨ ਧੁਰਹੁ ਲਿਖਿਆ ਆਇਆ।। ਇਕਿ ਫਿਰਹਿ ਘਨੇਰੇ ਕਰਹਿ ਗਲਾ ਗਲੀ ਕਿਨੈ ਨ ਪਾਇਆ।। ਕਹੈ ਨਾਨਕੁ ਸਬਦੁ ਸੋਹਿਲਾ ਸਤਿਗੁਰੂ ਸੁਣਾਇਆ।।੧੬।।*

*---ଏହୁ ସୋହିଲା ସବଦୁ ସୁହାୱା ।। ସବଦୋ ସୁହାୱା ସଦା ସୋହିଲା ସତିଗୁରୂ ସୁଣାଇଆ ।। ଏହୁ ତିନ କୈ ମଂନି ୱସିଆ ଜିନ ଧୁରହୁ ଲିଖିଆ ଆଇଆ ।। ଇକି ଫିରହି ଘନେରେ କରହି ଗଲା ଗଲୀ କିନୈ ନ ପାଇଆ ।। କହୈ ନାନକୁ ସବଦୁ ସୋହିଲା ସତିଗୁରୂ ସୁଣାଇଆ ।।୧୬।।*

ସରସ ସୁନ୍ଦର ଏହି ସ୍ତବ ଗୀତି ପରମାତ୍ମାଙ୍କର ପ୍ରିୟ ଅଟଇ ।।
ସମସ୍ତଙ୍କ ପ୍ରିୟ ଏହି ସ୍ତବ ଗୀତି ସଦଗୁରୁ ଦେବ ଛନ୍ତି ଶୁଣାଇ ।
ଏହା ଗୁରୁଙ୍କର ମନେ ବିରାଜିଛି ପ୍ରଭୁ ଯାହା ଲେଖିଛନ୍ତି ପଠାଇ ।।
ଭ୍ରମି ଆଉ କେତେ କହୁ ଥାନ୍ତି କଥା କଥା କହି ପାଇ ନାହନ୍ତି କେହି ।
କହଇ ନାନକ ଏହି ସ୍ତବ ଗୀତି ସଦଗୁରୁ ଦେବ ଛନ୍ତି ଶୁଣାଇ ।।୧୬।।

*੧੭) ਪਵਿਤੁ ਹੋਏ ਸੇ ਜਨਾ ਜਿਨੀ ਹਰਿ ਧਿਆਇਆ।। ਹਰਿ ਧਿਆਇਆ ਪਵਿਤੁ ਹੋਏ ਗੁਰਮੁਖਿ ਜਿਨੀ ਧਿਆਇਆ।। ਪਵਿਤੁ ਮਾਤਾ ਪਿਤਾ ਕੁਟੰਬ ਸਹਿਤ ਸਿਉ*

ਪਵਿਤੁ ਸੰਗਤਿ ਸਬਾਈਆ।। ਕਹਦੇ ਪਵਿਤੁ ਸੁਣਦੇ ਪਵਿਤੁ ਸੇ ਪਵਿਤੁ ਜਿਨੀ ਮੰਨਿ ਵਸਾਇਆ।। ਕਹੈ ਨਾਨਕੁ ਸੇ ਪਵਿਤੁ ਜਿਨੀ ਗੁਰਮੁਖਿ ਹਰਿ ਹਰਿ ਧਿਆਇਆ।।੧੭।।
---ପୱିତୁ ହୋଏ ସେ ଜନା ଜିନୀ ହରି ଧିଆଇଆ । । ହରି ଧିଆଇଆ ପୱିତୁ ହୋଏ ଗୁରମୁଖି ଜିନୀ ଧିଆଇଆ । । ପୱିତୁ ମାତା ପିତା କୁଟଂବ ସହିତ ସିଉ ପୱିତୁ ସଂଗତି ସବାଇଆ । । କହଦେ ପୱିତୁ ସୁଣଦେ ପୱିତୁ ସେ ପୱିତୁ ଜିନୀ ମଂନି ୱସାଇଆ । । କହୈ ନାନକୁ ସେ ପୱିତୁ ଜିନୀ ଗୁରମୁଖି ହରି ହରି ଧିଆଇଆ । ।୧୭ । ।

ପବିତ୍ର ହୋଇଲା ସେଇ ଜନ ଯିଏ  କଲା ହରିନାମ ହୃଦୟେ ଧ୍ୟାନ  । ।
ହରି ଧ୍ୟନ କରି ହୋଇଲା ପବିତ୍ର ପାଇ ଗୁରୁକୃପା ଯେ କଲା ଧ୍ୟାନ  ।
ମାତାପିତା ବନ୍ଧୁ କୁଟୁମ୍ବ ସହିତେ  ପବିତ୍ର ହୋଇଲା ତା'ର ଜୀବନ  । ।
ପବିତ୍ର ଯେ ଶୁଣେ କହେ କଥା ତା'ର  ପବିତ୍ର ପ୍ରଭୁକୁ ଯେ ଦେଲା ମନ  ।
କହଇ ନାନକ ହୋଇଲା ପବିତ୍ର ଗୁରୁ ଘେନି ହରି ଯେ କଲା ଧ୍ୟାନ  । ।୧୭ । ।

੧੮) ਕਰਮੀ ਸਹਜੁ ਨ ਊਪਜੈ ਵਿਣੁ ਸਹਜੈ ਸਹਸਾ ਨ ਜਾਇ।। ਨਹ ਜਾਇ ਸਹਸਾ ਕਿਤੈ ਸੰਜਮਿ ਰਹੇ ਕਰਮ ਕਮਾਏ।। ਸਹਸੈ ਜੀਉ ਮਲੀਣੁ ਹੈ ਕਿਤੁ ਸੰਜਮਿ ਧੋਤਾ ਜਾਏ।। ਮੰਨੁ ਧੋਵਹੁ ਸਬਦਿ ਲਾਗਹੁ ਹਰਿ ਸਿਉ ਰਹਹੁ ਚਿਤੁ ਲਾਇ।। ਕਹੈ ਨਾਨਕੁ ਗੁਰ ਪਰਸਾਦੀ ਸਹਜੁ ਉਪਜੈ ਇਹੁ ਸਹਸਾ ਇਵ ਜਾਇ।।੧੮।।
---କରମୀ ସହଜୁ ନ ଉପଜୈ ୱିଣୁ ସହଜୈ ସହସା ନ ଜାଇ । । ନହ ଜାଇ ସହସା କିତୈ ସଂଜମି ରହେ କରମ କମାଏ । । ସହସୈ ଜୀଉ ମଲୀଣୁ ହୈ କିତୁ ସଂଜମି ଧୋତା ଜାଏ । । ମଂନୁ ଧୋୱହୁ ସବଦି ଲାଗହୁ ହରି ସିଉ ରହହୁ ଚିତୁ ଲାଇ । । କହୈ ନାନକୁ ଗୁର ପରସାଦୀ ସହଜୁ ଉପଜୈ ଇହୁ ସହସା ଇୱ ଜାଇ । ।୧୮ । ।

କର୍ମ କାଣ୍ଡ କଲେ ଜ୍ଞାନ ନ ଉପୁଜେ  ଜ୍ଞାନ ବିନା ଭ୍ରମ ତୁଟଇ ନାହିଁ  ।।
ଆଉ କେଉଁଥିରେ ଭ୍ରମ ନ ତୁଟଇ  ଯେତେ ଯାହା କଲେ ସଂଯମ କର୍ମ  ।
ସନ୍ଦେହରେ ପଡ଼ି ହୋଇଛି ମଳିନ କୁହ କି ସଂଯମେ ଧୋଇବା ମନ  ।।
ଧୋଇ ଦିଅ ମନ ଗୁରୁଉପଦେଶେ  ହରି ସଙ୍ଗେ ଚିତ୍ତ ରଖ ଲଗାଇ  ।
କହଇ ନାନକ ଗୁରୁକୃପା ବଳେ  ଜ୍ଞାନ ହୁଏ, ଭ୍ରମ ଯାଏ ପଳାଇ  ।।୧୮।।

*੧੯) ਜੀਅਹੁ ਮੈਲੇ ਬਾਹਰਹੁ ਨਿਰਮਲ।। ਬਾਹਰਹੁ ਨਿਰਮਲ ਜੀਅਹੁ ਤ ਮੈਲੇ ਤਿਨੀ ਜਨਮੁ ਜੂਐ ਹਾਰਿਆ।। ਏਹ ਤਿਸਨਾ ਵਡਾ ਰੋਗੁ ਲਗਾ ਮਰਣੁ ਮਨਹੁ ਵਿਸਾਰਿਆ।। ਵੇਦਾ ਮਹਿ ਨਾਮੁ ਉਤਮੁ ਸੋ ਸੁਣਹਿ ਨਾਹੀ ਫਿਰਹਿ ਜਿਉ ਬੇਤਾਲਿਆ।। ਕਹੈ ਨਾਨਕੁ ਜਿਨ ਸਚੁ ਤਜਿਆ ਕੂੜੇ ਲਾਗੇ ਤਿਨੀ ਜਨਮੁ ਜੂਐ ਹਾਰਿਆ।।੧੯।।*

*--- ଜୀଅହୁ ମୈଲେ ବାହରହୁ ନିରମଳ ।। ବାହରହୁ ନିରମଳ ଜୀଅହୁ ତ ମୈଲେ ତିନୀ ଜନମୁ ଜୂଐ ହାରିଆ ।। ଏହ ତିସନା ୱଡା ରୋଗୁ ଲଗା ମରଣୁ ମନହୁ ୱିସାରିଆ ।। ୱେଦା ମହି ନାମୁ ଉତମୁ ସୋ ସୁଣହି ନାହୀ ଫିରହି ଜିଉ ବେତାଲିଆ ।। କହୈ ନାନକୁ ଜିନ ସଚୁ ତଜିଆ କୂଡ଼େ ଲାଗେ ତିନୀ ଜନମୁ ଜୂଐ ହାରିଆ ।।୧୯।।*

କି ଲାଭ ଯାହାର ଅନ୍ତର ମଳିନ ବାହାର ଟା ଖାଲି ନିର୍ମଳ ଥାଏ  ।।
ଯା' ବାହାର ଶୁଦ୍ଧ, ଅନ୍ତର ଅଶୁଦ୍ଧ  ଜୀବନର ବାଜି ହାରଇ ସିଏ  ।।
ତୃଷ୍ଣା ମହାରୋଗ  ହୋଇଥାଏ , ଯେଣୁ  ମରଣ କୁ ମନ ପାଶୋରି ଦିଏ ।।
ଯେଉଁ ହରି ନାମ ବେଦରେ ଉତ୍ତମ   ନ ଶୁଣି ଯେ ଭ୍ରମେ ବେତାଳ ପ୍ରାୟେ ।
(କହଇ ନାନକ)
ସତ୍ୟ ଛାଡ଼ି ଯିଏ ମିଥ୍ୟା ସଙ୍ଗ କରେ ଜୀବନର ବାଜି ହାରଇ ସିଏ  ।।୧୯।।

੨੦) ਜੀਅਹੁ ਨਿਰਮਲ ਬਾਹਰਹੁ ਨਿਰਮਲ।। ਬਾਹਰਹੁ ਤ ਨਿਰਮਲ ਜੀਅਹੁ ਨਿਰਮਲ ਸਤਿਗੁਰ ਤੇ ਕਰਣੀ ਕਮਾਣੀ।। ਕੂੜ ਕੀ ਸੋਇ ਪਹੁਚੈ ਨਾਹੀ ਮਨਸਾ ਸਚਿ ਸਮਾਣੀ।। ਜਨਮੁ ਰਤਨੁ ਜਿਨੀ ਖਟਿਆ ਭਲੇ ਸੇ ਵਣਜਾਰੇ।। ਕਹੈ ਨਾਨਕੁ ਜਿਨ ਮੰਨੁ ਨਿਰਮਲੁ ਸਦਾ ਰਹਹਿ ਗੁਰ ਨਾਲੇ।।੨੦।।

--- ଜୀଅହୁ ନିରମଲ ବାହରହୁ ନିରମଲ ।। ବାହରହୁ ତ ନିରମଲ ଜୀଅହୁ ନିରମଲ ସତିଗୁର ତେ କରଣୀ କମାଣୀ ।। କୂଡ଼ କୀ ସୋଇ ପହୁଚୈ ନାହୀ ମନସା ସଚି ସମାଣୀ ।। ଜନମୁ ରତନୁ ଜିନୀ ଖଟିଆ ଭଲେ ସେ ୱଣଜାରେ ।। କହୈ ନାନକୁ ଜିନ ମଂନୁ ନିରମଲୁ ସଦା ରହହି ଗୁର ନାଲେ ।।୨୦।।

ଅନ୍ତର ବାହାର ନିର୍ମଳ ଯାହାର ସବୁମନ୍ତେ ଅଟେ ସିଏ ଉତ୍ତମ ।।
ବାହାର ଅନ୍ତର ନିର୍ମଳ ଯାହାର ସଦ୍ଗୁରୁ କୃପାରେ ଅରଜେ ପୁଣ୍ୟ ।
ମିଥ୍ୟା କେବେ ତାକୁ ଛୁଇଁ ନ ପାରଇ ସତ୍ୟ ପଥେ ଚଳୁ ଥାଇ ତା ମନ ।।
ସେ ଭଲ ବଣିକ ଜୀବନ ରତ୍ନର ଠିକ୍ ମୂଲ୍ୟ କଲା ଯେ ନିରୂପଣ ।
କହଇ ନାନକ ଯା' ମନ ନିର୍ମଳ ମିଳେ ତାକୁ ସଦା ଗୁରୁ ଶରଣ ।।୨୦।।

(ସବୁମନ୍ତେ -ସର୍ବ ପ୍ରକାରେ)

੨੧) ਜੇ ਕੋ ਸਿਖੁ ਗੁਰੂ ਸੇਤੀ ਸਨਮੁਖੁ ਹੋਵੈ।। ਹੋਵੈ ਤ ਸਨਮੁਖੁ ਸਿਖੁ ਕੋਈ ਜੀਅਹੁ ਰਹੈ ਗੁਰ ਨਾਲੇ।। ਗੁਰ ਕੇ ਚਰਨ ਹਿਰਦੈ ਧਿਆਏ ਅੰਤਰ ਆਤਮੈ ਸਮਾਲੇ।। ਆਪੁ ਛਡਿ ਸਦਾ ਰਹੈ ਪਰਣੈ ਗੁਰ ਬਿਨੁ ਅਵਰੁ ਨ ਜਾਣੈ ਕੋਏ।। ਕਹੈ ਨਾਨਕੁ ਸੁਣਹੁ ਸੰਤਹੁ ਸੋ ਸਿਖੁ ਸਨਮੁਖੁ ਹੋਏ।।੨੧।।

--- ଜେ କୋ ସିଖୁ ଗୁରୂ ସେତୀ ସନମୁଖୁ ହୋୱୈ ।। ହୋୱୈ ତ ସନମୁଖୁ ସିଖୁ କୋଇ ଜୀଅହୁ ରହୈ ଗୁର ନାଲେ ।। ଗୁର କେ ଚରନ ହିରଦୈ ଧିଆଏ ଅଂତର ଆତମୈ ସମାଲେ ।। ଆପୁ ଛଡି ସଦା ରହୈ ପରଣୈ ଗୁର ବିନୁ ଅୱରୁ ନ ଜାଣୈ କୋଏ ।। କହୈ ନାନକୁ ସୁଣହୁ ସଂତହୁ ସୋ ସିଖୁ ସନମୁଖୁ ହୋଏ ।।୨୧।।

ଯଦି କେଉଁ ଶିଷ୍ୟ ଚିତ୍ତବୃତ୍ତି ଦେଇ  ଶ୍ରୀ ଗୁରୁ ନିକଟେ ରହେ ସେବାରେ ।।
ରହଇ ସେବାରେ ଯଦି କେଉଁ ଶିଷ୍ୟ  ଗୁରୁ ତୁଲେ ତା'ର ଚିତ୍ତ ରହଇ ।
ଗୁରୁ ପଦ ହୃଦେ ଧ୍ୟାନ କରଇ ସେ  ଅନ୍ତର ଆତ୍ମାରେ ସାଇତି ଥାଇ ।।
ଅହଂ ଛାଡ଼ି ରହେ ଗୁରୁ ଆଶ୍ରେ ସଦା  ଗୁରୁ ବିନା ମନ ନ ଦିଏ କାରେ ।
କହଇ ନାନକ ଶୁଣ ସନ୍ଥ ଜନେ ସେହି ଶିଷ୍ୟ ରହେ ଗୁରୁ ସେବାରେ ।।୨୧।।

*(କାରେ- କାହାକୁ)*

*੨੨) ਜੇ ਕੋ ਗੁਰ ਤੇ ਵੇਮੁਖੁ ਹੋਵੈ ਬਿਨੁ ਸਤਿਗੁਰ ਮੁਕਤਿ ਨ ਪਾਵੈ।। ਪਾਵੈ ਮੁਕਤਿ ਨ ਹੋਰਥੈ ਕੋਈ ਪੁਛਹੁ ਬਿਬੇਕੀਆ ਜਾਏ।। ਅਨੇਕ ਜੂਨੀ ਭਰਮਿ ਆਵੈ ਵਿਣੁ ਸਤਿਗੁਰ ਮੁਕਤਿ ਨ ਪਾਏ।। ਫਿਰਿ ਮੁਕਤਿ ਪਾਏ ਲਾਗਿ ਚਰਣੀ ਸਤਿਗੁਰੂ ਸਬਦੁ ਸੁਣਾਏ।। ਕਹੈ ਨਾਨਕੁ ਵੀਚਾਰਿ ਦੇਖਹੁ ਵਿਣੁ ਸਤਿਗੁਰ ਮੁਕਤਿ ਨ ਪਾਏ।।੨੨।।*

*--- ଜେ କୋ ଗୁର ତେ ୱେମୁଖୁ ହୋୱୈ ବିନୁ ସତିଗୁର ମୁକତି ନ ପାୱୈ ।। ପାୱୈ ମୁକତି ନ ହୋରଥୈ କୋଈ ପୁଛହୁ ବିବେକୀଆ ଜାଏ ।। ଅନେକ ଜୁନୀ ଭରମି ଆୱୈ ୱିଣୁ ସତିଗୁର ମୁକତି ନ ପାଏ ।। ଫିରି ମୁକତି ପାଏ ଲାଗି ଚରଣୀ ସତିଗୁରୁ ସବଦୁ ସୁଣାଏ ।। କହୈ ନାନକୁ ୱୀଚାରି ଦେଖହୁ ୱିଣୁ ସତିଗୁର ମୁକତି ନ ପାଏ ।।୨୨।।*

ଗୁରୁଠାରୁ ଯଦି କେ ହୁଏ ବିମୁଖ  ଗୁରୁ ବିନା ମୁକ୍ତି ସେ ଲଭେ ନାହିଁ ।।
ଲଭେ ନାହିଁ ମୁକ୍ତି ଆଉ କେଉଁଠାରେ ବିଚାରବନ୍ତଙ୍କୁ ପଚାର ଯାଇ ।
ବହୁ ଯୋନି ଭ୍ରମି ଭ୍ରମି ଆସିଲେ ବି  ଗୁରୁ ବିନା ମୁକ୍ତି ସେ ଲଭେ ନାହିଁ ।।
ପୁଣି ପାଦେ ପଡ଼ି ମୁକତି ଲଭଇ  ଉପଦେଶ ଗୁରୁ ଦେଲେ ଶୁଣାଇ ।
କହଇ ନାନକ ବିଚାରି ଦେଖ ହେ ଗୁରୁ ବିନା ମୁକ୍ତି କେ ଲଭେ ନାହିଁ ।।୨୨।।

*੨੩) ਆਵਹੁ ਸਿਖ ਸਤਿਗੁਰੂ ਕੇ ਪਿਆਰਿਹੋ ਗਾਵਹੁ ਸਚੀ ਬਾਣੀ।। ਬਾਣੀ ਤ ਗਾਵਹੁ ਗੁਰੂ ਕੇਰੀ ਬਾਣੀਆ ਸਿਰਿ ਬਾਣੀ।। ਜਿਨ ਕਉ ਨਦਰਿ ਕਰਮੁ ਹੋਵੈ*

*ਹਿਰਦੈ ਤਿਨਾ ਸਮਾਣੀ॥ ਪੀਵਹੁ ਅੰਮ੍ਰਿਤੁ ਸਦਾ ਰਹਹੁ ਹਰਿ ਰੰਗਿ ਜਪਿਹੁ ਸਾਰਿਗਪਾਣੀ॥ ਕਹੈ ਨਾਨਕੁ ਸਦਾ ਗਾਵਹੁ ਏਹ ਸਚੀ ਬਾਣੀ॥੨੩॥*

*---ଆୱହୁ ସିଖ ସତିଗୁରୂ କେ ପିଆରିହୋ ଗାୱହୁ ସଚୀ ବାଣୀ । । ବାଣୀ ତ ଗାୱହୁ ଗୁରୂ କେରୀ ବାଣୀଆ ସିରି ବାଣୀ । । ଜିନ କଉ ନଦରି କରମୁ ହୋୱୈ ହିରଦୈ ତିନା ସମାଣୀ । । ପୀୱହୁ ଅଂମ୍ରିତୁ ସଦା ରହହୁ ହରି ରଂଗି ଜପିହୁ ସାରିଗପାଣୀ । । କହୈ ନାନକୁ ସଦା ଗାୱହୁ ଏହ ସଚୀ ବାଣୀ । ।୨୩ । ।*

ସଦଗୁରୁ ପ୍ରିୟ ଶିଷ୍ୟଗଣ ଆସ ମିଳି *ସତ୍ୟବାଣୀ* କର ଗାୟନ । ।
କର ହେ ଗାୟନ ବାଣୀ ଗୁରୁଙ୍କର ସେହି ବାଣୀ ଶ୍ରେଷ୍ଠ ବାଣୀ ମଧ୍ୟରେ ।
ଗୁରୁ କୃପା ଦୃଷ୍ଟି ଥିବ ଯା ଉପରେ ପ୍ରବେଶଇ ବାଣୀ ତା ହୃଦୟରେ । ।
ପିଅ ନାମାମୃତ ରହ *ହରି ରଙ୍ଗେ* ଅବିରତ, ଜପ ଶ୍ରୀ ନାରାୟଣ ।
କହଇ ନାନକ ଶିଷ୍ୟଗଣ ସଦା ଏହି ସତ୍ୟବାଣୀ କର ଗାୟନ । ।୨୩ । ।

*(ସତ୍ୟବାଣୀ:-ସତ୍ୟପ୍ରଭୁ ସ୍ତୁତି, ହରି ରଙ୍ଗେ:-ହରି ପ୍ରେମରେ)*

*੨੪) ਸਤਿਗੁਰੂ ਬਿਨਾ ਹੋਰ ਕਚੀ ਹੈ ਬਾਣੀ॥ ਬਾਣੀ ਤ ਕਚੀ ਸਤਿਗੁਰੂ ਬਾਝਹੁ ਹੋਰ ਕਚੀ ਬਾਣੀ॥ ਕਹਦੇ ਕਚੇ ਸੁਣਦੇ ਕਚੇ ਕਚੀਂ ਆਖਿ ਵਖਾਣੀ॥ ਹਰਿ ਹਰਿ ਨਿਤ ਕਰਹਿ ਰਸਨਾ ਕਹਿਆ ਕਛੂ ਨ ਜਾਣੀ॥ ਚਿਤੁ ਜਿਨ ਕਾ ਹਿਰਿ ਲਇਆ ਮਾਇਆ ਬੋਲਨਿ ਪਏ ਰਵਾਣੀ॥ ਕਹੈ ਨਾਨਕੁ ਸਤਿਗੁਰੂ ਬਾਝਹੁ ਹੋਰ ਕਚੀ ਬਾਣੀ॥੨੪॥*

*--- ସତିଗୁରୂ ବିନା ହୋର କଚୀ ହୈ ବାଣୀ । । ବାଣୀ ତ କଚୀ ସତିଗୁରୂ ବାଝହୁ ହୋର କଚୀ ବାଣୀ । । କହଦେ କଚେ ସୁଣଦେ କଚେ କଚୀଂ ଆଖି ୱଖାଣୀ । । ହରି ହରି ନିତ କରହି ରସନା କହିଆ କଛୂ ନ ଜାଣୀ । । ଚିତୁ ଜିନ କା ହିରି ଲଇଆ ମାଇଆ ବୋଲନି ପଏ ରୱାଣୀ । । କହୈ ନାନକୁ ସତିଗୁରୂ ବାଝହୁ ହୋର କଚୀ ବାଣୀ । ।୨୪ । ।*

ଗୁରୁବାଣୀ ବିନା ଆଉ ଯେତେ ବାଣୀ  ସବୁ ବାଣୀ ମିଥ୍ୟା ବ୍ୟର୍ଥ ନିଷ୍ଫଳ ।
ମିଥ୍ୟା ଅଟେ ବାଣୀ ଗୁରୁବାଣୀ ବିନା ସବୁ ବାଣୀ ମିଥ୍ୟା ବ୍ୟର୍ଥ ନିଷ୍ଫଳ  ।।
କହେ ଶୁଣେ ଯିଏ ଅଟଇ ସେ ମିଥ୍ୟା  ଉଚ୍ଚାରଣ ତା'ର ମିଥ୍ୟା ଅଟଇ  ।
ହରି ହରି ଜପେ ରସନାରେ ନିତି  କହୁଥାଇ ଯାହା ବୁଝୁ ନଥାଇ  ।।
ଚୋରାଇ ନେଇଛି ମାୟା ଯା'ର ଚିତ୍ତ ଚଳାଇ ପାରେ ସେ  ଜିହ୍ୱା କେବଳ ।
କହଇ ନାନକ ଗୁରୁବାଣୀ ବିନା ସବୁ ବାଣୀ ମିଥ୍ୟା ବ୍ୟର୍ଥ ନିଷ୍ଫଳ  ।।୨୪।।

*੨੫)  ਗੁਰ ਕਾ ਸਬਦੁ ਰਤੰਨੁ ਹੈ ਹੀਰੇ ਜਿਤੁ ਜੜਾਉ।। ਸਬਦੁ ਰਤਨੁ ਜਿਤੁ ਮੰਨੁ ਲਾਗਾ ਏਹੁ ਹੋਆ ਸਮਾਉ।। ਸਬਦ ਸੇਤੀ ਮਨੁ ਮਿਲਿਆ ਸਚੈ ਲਾਇਆ ਭਾਉ।। ਆਪੇ ਹੀਰਾ ਰਤਨੁ ਆਪੇ ਜਿਸਨੋ ਦੇਇ ਬੁਝਾਇ।। ਕਹੈ ਨਾਨਕੁ ਸਬਦੁ ਰਤਨੁ ਹੈ ਹੀਰਾ ਜਿਤੁ ਜੜਾਉ।।੨੫।।*

*--- ଗୁର କା ସବଦୁ ରତଂନୁ ହୈ ହୀରେ ଜିତୁ ଜଡ଼ାଉ ।। ସବଦୁ ରତନୁ ଜିତୁ ମଂନୁ ଲାଗା ଏହୁ ହୋଆ ସମାଉ ।। ସବଦ ସେତୀ ମନୁ ମିଳିଆ ସଚୈ ଲାଇଆ ଭାଉ ।। ଆପେ ହୀରା ରତନୁ ଆପେ ଜିସନୋ ଦେଇ ବୁଝାଇ ।। କହୈ ନାନକୁ ସବଦୁ ରତନୁ ହୈ ହୀରା ଜିତୁ ଜଡ଼ାଉ ।।୨୫ ।।*

ଗୁରୁ ଉପଦେଶେ ମନ ଦିଅ ତାହା  ହୀରାରେ ମଣ୍ଡିତ ରତ୍ନ ଅଟଇ  ।।
ଉପଦେଶ ରତ୍ନ ଯା'ମନ ଛୁଅଇଁ  ଲୀନ ହୋଇଯାଏ ତହିଁରେ ମନ  ।
ଗୁରୁ ଉପଦେଶେ ଲୀନ ହେଲେ ମନ  ସଚ୍ଚା ପ୍ରଭୁଠାରେ ହୁଅଇ ପ୍ରେମ ।।
ଆପେ ପ୍ରଭୁ ହୀରା ଆପେ ସିଏ ରତ୍ନ  ଜ୍ଞାନ ଦେଇ ଆପେ ଦିଏ ବୁଝାଇ  ।
କହଇ ନାନକ ଗୁରୁ ଉପଦେଶ  ହୀରାରେ ମଣ୍ଡିତ ରତ୍ନ ଅଟଇ ।।୨୫।।

*੨੬)  ਸਿਵ ਸਕਤਿ ਆਪਿ ਉਪਾਇਕੈ ਕਰਤਾ ਆਪੇ ਹੁਕਮੁ ਵਰਤਾਏ।। ਹੁਕਮੁ ਵਰਤਾਏ ਆਪਿ ਵੇਖੈ ਗੁਰਮੁਖਿ ਕਿਸੈ ਬੁਝਾਏ।। ਤੋੜੇ ਬੰਧਨ ਹੋਵੈ ਮੁਕਤੁ ਸਬਦੁ ਮੰਨਿ*

ਵਸਾਏ।। ਗੁਰਮੁਖਿ ਜਿਸਨੋ ਆਪਿ ਕਰੇ ਸੁ ਹੋਵੈ ਏਕਸ ਸਿਉ ਲਿਵ ਲਾਏ।। ਕਹੈ ਨਾਨਕੁ ਆਪਿ ਕਰਤਾ ਆਪੇ ਹੁਕਮੁ ਬੁਝਾਏ।।੨੬।।

--- ସିୱ ସକତି ଆପି ଉପାଇକୈ କରତା ଆପେ ହୁକମୁ ୱରତାଏ।। ହୁକମୁ ୱରତାଏ ଆପି ୱେଖୈ ଗୁରମୁଖି କିସୈ ବୁଝାଏ।। ତୋଡ଼େ ବଂଧନ ହୋୱୈ ମୁକତୁ ସବଦୁ ମଂନି ୱସାଏ।। ଗୁରମୁଖି ଜିସନୋ ଆପି କରେ ସୁ ହୋୱୈ ଏକସ ସିଉ ଲିୱ ଲାଏ।। କହୈ ନାନକୁ ଆପି କରତା ଆପେ ହୁକମୁ ବୁଝାଏ।।୨୬।।

ଶିବଶକତିକୁ ସୃଷ୍ଟି କରି ଆପେ  ଆପେ ସେ କରତା ଆଦେଶ ଦିଏ ।।
ଆଦେଶ ଦିଏ ସେ ଆପେ ଯତ୍ନ ନିଏ  ଗୁରୁ ଭକତକୁ ଦିଏ ବୁଝାଇ ।
ଗୁରୁଉପଦେଶ ମନରେ ଯେ ରଖେ ସେ ଲଭେ ମୁକତି ମାୟା ତୁଟାଇ ।।
ଯାହାକୁ ଚାହେଁ ସେ ହୋଇ ଗୁରୁଭକ୍ତ ଏକ ବ୍ରହ୍ମେ ଚିତ୍ତ ମିଶାଇ ଥାଏ ।
କହଇ ନାନକ ଆପେ ସେ କରତା ଆପେ ତା ଆଦେଶ ବୁଝାଇ ଦିଏ ।।୨୬।।
(ଶିବଶକ୍ତି:--ପୁରୁଷ ଓ ପ୍ରକୃତି, ମହାଚେତନା ଓ ମାୟା )

੨੭) ਸਿਮ੍ਰਿਤਿ ਸਾਸਤ੍ਰ ਪੁੰਨ ਪਾਪ ਬੀਚਾਰਦੇ ਤਤੈ ਸਾਰ ਨ ਜਾਣੀ।। ਤਤੈ ਸਾਰ ਨ ਜਾਣੀ ਗੁਰੂ ਬਾਝਹੁ ਤਤੈ ਸਾਰ ਨ ਜਾਣੀ।। ਤਿਹੀ ਗੁਣੀ ਸੰਸਾਰੁ ਭ੍ਰਮਿ ਸੁਤਾ ਸੁਤਿਆ ਰੈਣਿ ਵਿਹਾਣੀ।। ਗੁਰ ਕਿਰਪਾ ਤੇ ਸੇ ਜਨ ਜਾਗੇ ਜਿਨਾ ਹਰਿ ਮਨਿ ਵਸਿਆ ਬੋਲਹਿ ਅੰਮ੍ਰਿਤ ਬਾਣੀ।। ਕਹੈ ਨਾਨਕੁ ਸੋ ਤਤੁ ਪਾਏ ਜਿਸ ਨੋ ਅਨਦਿਨੁ ਹਰਿ ਲਿਵ ਲਾਗੈ ਜਾਗਤ ਰੈਣਿ ਵਿਹਾਣੀ।।੨੭।।

--- ସିମ୍ରିତି ସାସତ୍ର ପୁଂନ ପାପ ବୀଚାରଦେ ତତୈ ସାର ନ ଜାଣୀ।। ତତୈ ସାର ନ ଜାଣୀ ଗୁରୂ ବାଝହୁ ତତୈ ସାର ନ ଜାଣୀ।। ତିହୀ ଗୁଣୀ ସଂସାରୁ ଭ୍ରମି ସୁତା ସୁତିଆ ରୈଣି ୱିହାଣୀ।। ଗୁର କିରପା ତେ ସେ ଜନ ଜାଗେ ଜିନା ହରି ମନି ୱସିଆ ବୋଲହି ଅଂମ୍ରିତ ବାଣୀ।। କହୈ ନାନକୁ ସୋ ତତୁ ପାଏ ଜିସ ନୋ ଅନଦିନୁ ହରି ଲିୱ ଲାଗୈ ଜାଗତ ରୈଣି ୱିହାଣୀ।।୨୭।।

ସ୍ମୃତି ଶାସ୍ତ୍ର ପାପ ପୂଣ୍ୟ ବିଚାରନ୍ତି  ତତ୍ତ୍ୱସାର ମାତ୍ର ନଥାନ୍ତି ଜାଣି  ।।
ନ ଜାଣନ୍ତି ତତ୍ତ୍ୱସାର ଗୁରୁବିନା କେହି ନ ଜାଣନ୍ତି ତତ୍ତ୍ୱର ସାର  ।
ତ୍ରିଗୁଣ ଭ୍ରମରେ ଶୋଇଛି ସଂସାର  ବିତଇ ରଜନୀ ଶୟନେ ତା'ର ।।
ଗୁରୁକୃପା ବଳେ ଜାଗେ ସେଇ ଜନ ମନେ ବାସ ଯା'ର ସଦା ହରିନାମ
ବୋଲୁଥାଇ ଯିଏ ଅମୃତ ବାଣୀ  ।
କହଇ ନାନକ ତତ୍ତ୍ୱ ପାଏ ସିଏ ଅନୁଦିନ ଯିଏ ହରିନାମ ଧ୍ୟାୟେ
ଜାଗରଣେ ବିତେ ତା'ର ରଜନୀ  ।।୨୭।।

*(ତ୍ରିଗୁଣ ଭ୍ରମରେ:- ସତ, ରଜ, ତମର ଭ୍ରମ ।*
*ରଜନୀ:- ରାତ୍ରୀ,ଆୟୁଷ ରୂପକ ରାତ୍ରୀ)*

*੨੮)  ਮਾਤਾ ਕੇ ਉਦਰ ਮਹਿ ਪ੍ਰਿਤਪਾਲ ਕਰੇ ਸੋ ਕਿਉ ਮਨਹੁ ਵਿਸਾਰੀਐ।। ਮਨਹੁ ਕਿਉ ਵਿਸਾਰੀਐ ਏਵਡੁ ਦਾਤਾ ਜਿ ਅਗਨਿ ਮਹਿ ਆਹਾਰੁ ਪਹੁਚਾਵਏ।। ਓਸਨੋ ਕਿਹੁ ਪੋਹਿ ਨ ਸਕੀ ਜਿਸਨਉ ਆਪਣੀ ਲਿਵ ਲਾਵਏ।। ਆਪਣੀ ਲਿਵ ਆਪੇ ਲਾਏ ਗੁਰਮੁਖਿ ਸਦਾ ਸਮਾਲੀਐ।। ਕਹੈ ਨਾਨਕੁ ਏਵਡੁ ਦਾਤਾ ਸੋ ਕਿਉ ਮਨਹੁ ਵਿਸਾਰੀਐ।।੨੮।।*

*--- ମାତା କେ ଉଦର ମହି ପ୍ରିତପାଳ କରେ ସୋ କିଉ ମନହୁ ୱିସାରୀଐ ।। ମନହୁ କିଉ ୱିସାରୀଐ ଏୱଡୁ ଦାତା ଜି ଅଗନି ମହି ଆହାରୁ ପହୁଚାୱଏ ।। ଓସନୋ କିହୁ ପୋହି ନ ସକୀ ଜିସନଉ ଆପଣୀ ଲିୱ ଲାୱଏ ।। ଆପଣୀ ଲିୱ ଆପେ ଲାଏ ଗୁର୍ମୁଖି ସଦା ସମାଲୀଐ ।। କହୈ ନାନକୁ ଏୱଡୁ ଦାତା ସୋ କିଉ ମନହୁ ୱିସାରୀଐ ।।୨୮ ।।*

ମାତା ଗର୍ଭେ ତୋତେ ପ୍ରତିପାଳେ ଯିଏ   ଭୁଲି ଯାଉ କିଆଁ ମନରୁ ତୋର ।।
ମନୁ ଭୁଲୁ କିଆଁ ଏଡ଼େ ବଡ଼ ଦାତା   ଗର୍ଭାଗ୍ନିରେ ଯିଏ ଦିଏ ଆହାର  ।
କିଛି ବି ତାହାର ହାନି ହୁଏ ନାଇଁ  ରଖେ ଯା'କୁ ପ୍ରୀତି ବନ୍ଧନେ ତା'ର ।।

ଆପଣା ପ୍ରୀତିରେ ଆପେ ବାନ୍ଧି ରଖେ  ସଦା ସେ ପ୍ରଭୁଙ୍କୁ ହୃଦୟେ ଧର ।
କହଇ ନାନକ ଏଡ଼େ ବଡ଼ ଦାତା  ଭୁଲି ଯାଉ କିଆଁ ମନରୁ ତୋର ।।୨୮ ।।

*੨੯)  ਜੈਸੀ ਅਗਨਿ ਉਦਰ ਮਹਿ ਤੈਸੀ ਬਾਹਰਿ ਮਾਇਆ।। ਮਾਇਆ ਅਗਨਿ ਸਭ ਇਕੋ ਜੇਹੀ ਕਰਤੈ ਖੇਲੁ ਰਚਾਇਆ।। ਜਾ ਤਿਸੁ ਭਾਣਾ ਤਾ ਜੰਮਿਆ ਪਰਵਾਰਿ ਭਲਾ  ਭਾਇਆ।। ਲਿਵ ਛੁੜਕੀ ਲਗੀ ਤ੍ਰਿਸਨਾ ਮਾਇਆ ਅਮਰੁ ਵਰਤਾਇਆ।। ਏਹ ਮਾਇਆ ਜਿਤੁ ਹਰਿ ਵਿਸਰੈ ਮੋਹੁ ਉਪਜੈ ਭਾਉ ਦੂਜਾ ਲਾਇਆ।। ਕਹੈ ਨਾਨਕੁ ਗੁਰ ਪਰਸਾਦੀ ਜਿਨਾ ਲਿਵ ਲਾਗੀ ਤਿਨੀ ਵਿਚੇ ਮਾਇਆ ਪਾਇਆ।।੨੯।।*

*--- ଜୈସୀ ଅଗନି ଉଦର ମହି ତୈସୀ ବାହରି ମାଇଆ ।। ମାଇଆ ଅଗନି ସଭି ଇକୋ ଜେହୀ କରତୈ ଖେଲୁ ରଚାଇଆ ।। ଜା ତିସୁ ଭାଣା ତା ଜଂମିଆ ପରୱାରି ଭଲା  ଭାଇଆ ।। ଲିୱ ଛୁଡ଼କୀ ଲଗୀ ତ୍ରିସନା ମାଇଆ ଅମରୁ ୱରତାଇଆ ।। ଏହ ମାଇଆ ଜିତୁ ହରି ୱିସରୈ ମୋହୁ ଉପଜୈ ଭାଉ ଦୂଜା ଲାଇଆ ।। କହୈ ନାନକୁ ଗୁର ପରସାଦୀ ଜିନା ଲିୱ ଲାଗୀ ତିନୀ ୱିଚେ ମାଇଆ  ପାଇଆ ।।୨୯ ।।*

ମାତା ଗର୍ଭେ ଅଗ୍ନି ଯେମନ୍ତ ପ୍ରକାର  ତେମନ୍ତ ବାହାରେ ମାୟାର ଜ୍ୱାଳା ।
ଅଗ୍ନି ଆଉ ମାୟା ଏକ ପରକାର  ରଚିଛି କରତା ତାହାର ଖେଳା ।।
ଇଚ୍ଛା ହେଲା ତାର ଜନମିଲା ପ୍ରାଣୀ ପରିବାର ଜନେ ଲାଗିଲା ଭଲ ।
ଭୁଲିଗଲା ପ୍ରଭୁ ଗୋଡ଼ାଇଲା ତୃଷ୍ଣା  ଲାଗିଗଲା ତହିଁ ମାୟାର ଛଳ ।।
ମାୟା ଲାଗି ହରି ହୁଅଇ ବିସ୍ମୃତ  ସାଂସାରିକ ମୋହ  ହୁଅଇ ଜାଗ୍ରତ
ଅନ୍ୟ ସବୁଥିରେ ଲାଗଇ ମନ  ।
କହଇ ନାନକ ଗୁରୁ ପରସାଦେ ଲାଗି ଯାଏ ଯା'ର ଧ୍ୟାନ ପ୍ରଭୁ ସଙ୍ଗେ
ମାୟା ମଧ୍ୟେ ପାଏ ସେ ତତ୍ତ୍ୱଜ୍ଞାନ  ।।୨୯ ।।

੩੦) ਹਰਿ ਆਪਿ ਅਮੁਲਕੁ ਹੈ ਮੁਲਿ ਨ ਪਾਇਆ ਜਾਇ।। ਮੁਲਿ ਨ ਪਾਇਆ ਜਾਇ ਕਿਸੈ ਵਿਟਹੁ ਰਹੇ ਲੋਕ ਵਿਲਲਾਇ।। ਐਸਾ ਸਤਿਗੁਰੁ ਜੇ ਮਿਲੈ ਤਿਸਨੋ ਸਿਰੁ ਸਉਪੀਐ ਵਿਚਹੁ ਆਪੁ ਜਾਇ।। ਜਿਸਦਾ ਜੀਉ ਤਿਸੁ ਮਿਲਿ ਰਹੈ ਹਰਿ ਵਸੈ ਮਨਿ ਆਇ।। ਹਰਿ ਆਪਿ ਅਮੁਲਕੁ ਹੈ ਭਾਗ ਤਿਨਾ ਕੇ ਨਾਨਕਾ ਜਿਨ ਹਰਿ ਪਲੈ ਪਾਇ।।੩੦।।

--- ହରି ଆପି ଅମୁଲକୁ ହୈ ମୁଲି ନ ପାଇଆ ଜାଇ । । ମୁଲି ନ ପାଇଆ ଜାଇ କିସୈ ୱିଟହୁ ରହେ ଲୋକ ୱିଲଲାଇ । । ଐସା ସତିଗୁରୁ ଜେ ମିଲୈ ତିସନୋ ସିରୁ ସଉପୀଐ ୱିଚହୁ ଆପୁ ଜାଇ । । ଜିସଦା ଜୀଉ ତିସୁ ମିଲି ରହୈ ହରି ୱସୈ ମନି ଆଇ । । ହରି ଆପି ଅମୁଲକୁ ହୈ ଭାଗ ତିନା କେ ନାନକା ଜିନ ହରି ପଲୈ ପାଇ । ।୩୦ । ।

ଆପେ ପ୍ରଭୁ ହରି ଅଟଇ ଅମୂଲ୍ୟ ତା ମୂଲ୍ୟ ନିର୍ଣ୍ଣୟ କରି ନୁହଇ । ।  
ଚେଷ୍ଟା କରି ସିନା ହେଲେ ଛଟପଟ କିଏ ବି ତା ମୂଲ୍ୟ ପାଇଲା ନାହିଁ ।  
ମିଳିଲେ ସଦ୍ଗୁରୁ ସମର୍ପିତ ହେଲେ ଗର୍ବ ଅହମିକା ଦୂର ହୁଅଇ । ।  
ତେବେ ଜୀବ ତା'ର ମୂଳକୁ ଚିହ୍ନଇ ହରି ଆସି ମନେ ବାସ କରଇ ।  
କହଇ ନାନକ ଅମୂଲ୍ୟ ସେ ହରି ଭାଗ୍ୟବାନ ତାକୁ ହୃଦେ ଧରଇ । ।୩୦ । ।

੩੧) ਹਰਿ ਰਾਸਿ ਮੇਰੀ ਮਨੁ ਵਣਜਾਰਾ।। ਹਰਿ ਰਾਸਿ ਮੇਰੀ ਮਨੁ ਵਣਜਾਰਾ ਸਤਿਗੁਰ ਤੇ ਰਾਸਿ ਜਾਣੀ।। ਹਰਿ ਹਰਿ ਨਿਤ ਜਪਿਹੁ ਜੀਅਹੁ ਲਾਹਾ ਖਟਿਹੁ ਦਿਹਾੜੀ।। ਏਹੁ ਧਨੁ ਤਿਨਾ ਮਿਲਿਆ ਜਿਨ ਹਰਿ ਆਪੇ ਭਾਣਾ।। ਕਹੈ ਨਾਨਕੁ ਹਰਿ ਰਾਸਿ ਮੇਰੀ ਮਨੁ ਹੋਆ ਵਣਜਾਰਾ।।੩੧।।

--- ହରି ରାସି ମେରୀ ମନୁ ୱଣଜାରା । । ହରି ରାସି ମେରୀ ମନୁ ୱଣଜାରା ସତିଗୁର ତେ ରାସି ଜାଣୀ । । ହରି ହରି ନିତ ଜପିହୁ ଜୀଅହୁ ଲାହା ଖଟିହୁ ଦିହାଡ଼ୀ । । ଏହୁ ଧନୁ ତିନା ମିଲିଆ ଜିନ ହରି ଆପେ ଭାଣା । । କହୈ ନାନକୁ ହରି ରାସି ମେରୀ ମନୁ ହୋଆ ୱଣଜାରା । ।୩୧ । ।

ଅଟେ ହରିନାମ ମୋର ମହାଧନ  ମୋ ମନ ବଣିକ କରେ ବେପାର ।।
ହରିନାମ ଧନ ମୋ ମନ ବଣିକ ସଦଗୁରୁଠାରୁ ପାରିଲି ଜାଣି ।
ହରି ହରି ସଦା ଧ୍ୟାନ କରି ହୃଦେ  ପ୍ରତିଦିନ ଲାଭ ରଖୁଚି ଗଣି ।।
ହରି ନାମ ଧନ ମିଳିଲା ତାହାକୁ  ଯା'କୁ ଦେଲେ ନିଜେ ପରମେଶ୍ୱର ।
କହଇ ନାନକ ହରି ମୋର ଧନ  ମୋ ମନ ବଣିକ କରେ ବେପାର  ।।୩୧ ।।

*੩੨)  ਏ ਰਸਨਾ ਤੂ ਅਨਰਸਿ ਰਾਚਿ ਰਹੀ ਤੇਰੀ ਪਿਆਸ ਨ ਜਾਇ।। ਪਿਆਸ ਨ ਜਾਇ ਹੋਰਤੁ ਕਿਤੈ ਜਿਚਰੁ ਹਰਿ ਰਸੁ ਪਲੈ ਨ ਪਾਇ।। ਹਰਿ ਰਸੁ ਪਾਇ ਪਲੈ ਪੀਐ ਹਰਿ ਰਸੁ ਬਹੁੜਿ ਨ ਤ੍ਰਿਸਨਾ ਲਾਗੈ ਆਇ।। ਏਹੁ ਹਰਿ ਰਸੁ ਕਰਮੀ ਪਾਈਐ ਸਤਿਗੁਰੁ ਮਿਲੈ ਜਿਸੁ ਆਇ।। ਕਹੈ ਨਾਨਕੁ ਹੋਰਿ ਅਨ ਰਸ ਸਭਿ ਵੀਸਰੇ ਜਾ ਹਰਿ ਵਸੈ ਮਨਿ ਆਇ।।੩੨।।*

*---ଏ ରସନା ତୂ ଅନରସି ରାଚି ରହୀ ତେରୀ ପିଆସ ନ ଜାଇ ।। ପିଆସ ନ ଜାଇ ହୋରତୁ କିତୈ ଜିଚରୁ ହରି ରସୁ ପଲୈ ନ ପାଇ ।। ହରି ରସୁ ପାଇ ପଲୈ ପୀଐ ହରି ରସୁ ବହୁଡ଼ି ନ ତ୍ରିସନା ଲାଗୈ ଆଇ ।। ଏହୁ ହରି ରସୁ କରମୀ ପାଈଐ ସତିଗୁରୁ ମିଲୈ ଜିସୁ ଆଇ ।। କହୈ ନାନକୁ ହୋରି ଅନ ରସ ସଭି ୱୀସରେ ଜା ହରି ୱସୈ ମନି ଆଇ ।।୩୨ ।।*

ଆନ ରସେ ଯେଣୁ ମାତିଛୁ ରେ ଜିହ୍ୱା ଯାଉ ନାହିଁ କେବେ ତୋହର ଶୋଷ ।।
ଶୋଷ ଯାଏ ନାହିଁ ଆଉ କେଉଁଥିରେ ହରି ରସକୁ ନ ପାଇବା ଯାଏ ।
ପାଇ ହରି ରସ, ପାନ କଲେ ଥରେ ଆଉ କେବେ ହେଲେ ଶୋଷ ନହୁଏ ।।
ଯାହାକୁ ମିଳଇ ସଦଗୁରୁ ଆସି  ସତ୍କର୍ମେରେ ମିଳେ ଏ ହରିରସ  ।
କହଇ ନାନକ ସବୁ ରସ ଭୁଲେ  ହରି ଆସି ମନେ କଲେକ ବାସ  ।।୩୨ ।।

*੩੩)  ਏ ਸਰੀਰਾ ਮੇਰਿਆ ਹਰਿ ਤੁਮ ਮਹਿ ਜੋਤਿ ਰਖੀ ਤਾ ਤੂ ਜਗ ਮਹਿ ਆਇਆ।। ਹਰਿ ਜੋਤਿ ਰਖੀ ਤੁਧੁ ਵਿਚਿ ਤਾ ਤੂ ਜਗ ਮਹਿ ਆਇਆ।। ਹਰਿ ਆਪੇ*

ਮਾਤਾ ਆਪੇ ਪਿਤਾ ਜਿਨਿ ਜੀਉ ਉਪਾਇ ਜਗਤੁ ਦਿਖਾਇਆ।। ਗੁਰ ਪਰਸਾਦੀ ਬੁਝਿਆ ਤਾ ਚਲਤੁ ਹੋਆ ਚਲਤੁ ਨਦਰੀ ਆਇਆ।। ਕਹੈ ਨਾਨਕੁ ਸ੍ਰਿਸਟਿ ਕਾ ਮੂਲੁ ਰਚਿਆ ਜੋਤਿ ਰਾਖੀ ਤਾ ਤੂ ਜਗ ਮਹਿ ਆਇਆ।।੩੩।।

---ଏ ସରୀରା ମେରିଆ ହରି ତୁମ ମହି ଜୋତି ରଖୀ ତା ତୂ ଜଗ ମହି ଆଇଆ।। ହରି ଜୋତି ରଖୀ ତୁଧୁ ୱିଚି ତା ତୂ ଜଗ ମହି ଆଇଆ।। ହରି ଆପେ ମାତା ଆପେ ପିତା ଜିନି ଜୀଉ ଉପାଇ ଜଗତୁ ଦିଖାଇଆ।। ଗୁର ପରସାଦୀ ବୁଝିଆ ତା ଚଲତୁ ହୋଆ ଚଲତୁ ନଦରୀ ଆଇଆ।। କହୈ ନାନକୁ ସ୍ରିସଟି କା ମୂଲୁ ରଚିଆ ଜୋତି ରାଖୀ ତା ତୂ ଜଗ ମହି ଆଇଆ।।୩୩।।

ହରି ତୋ ଭିତରେ ଜ୍ୟୋତି ରଖିଲାରୁ ଜଗତେ ଆସିଛୁ ଶରୀର ମୋର।।
ତୋ ଭିତରେ ହରି ରଖିଲାରୁ ଜ୍ୟୋତି ତୁ ପରା ଆସିଛୁ ଏଇ ଜଗତେ।
ହରି ଆପେ ପିତା ଆପେ ମାତା ସିଏ ଦେଖାଇଛି ଯିଏ ସଂସାର ତୋତେ।।
ଗୁରୁ ପରସାଦେ ହେଲା ଚମତ୍କାର ମାୟା କୁହୁକରେ ଭରା ଏ ସଂସାର
ଯହିଁ ଦେଖ ହେଲା ଦୃଷ୍ଟିଗୋଚର।
କହଇ ନାନକ ସୃଷ୍ଟିମୂଳ ରଚି ତୋ ଭିତରେ ହରି ରଖିଲାରୁ ଜ୍ୟୋତି
ଜଗତେ ଆସିଛୁ ଶରୀର ମୋର।।୩୩।।

(ସୃଷ୍ଟିମୂଳ:- ମାୟା)

੩੪) ਮਨਿ ਚਾਉ ਭਇਆ ਪ੍ਰਭ ਆਗਮੁ ਸੁਣਿਆ।। ਹਰਿ ਮੰਗਲੁ ਗਾਉ ਸਖੀ ਗ੍ਰਿਹੁ ਮੰਦਰੁ ਬਣਿਆ।। ਹਰਿ ਗਾਉ ਮੰਗਲੁ ਨਿਤ ਸਖੀਏ ਸੋਗੁ ਦੂਖੁ ਨ ਵਿਆਪਏ।। ਗੁਰ ਚਰਨ ਲਾਗੇ ਦਿਨ ਸਭਾਗੇ ਆਪਣਾ ਪਿਰੁ ਜਾਪਏ।। ਅਨਹਤ ਬਾਣੀ ਗੁਰ ਸਬਦਿ ਜਾਣੀ ਹਰਿ ਨਾਮੁ ਹਰਿ ਰਸੁ ਭੋਗੋ।। ਕਹੈ ਨਾਨਕੁ ਪ੍ਰਭੁ ਆਪਿ ਮਿਲਿਆ ਕਰਣ ਕਾਰਣ ਜੋਗੋ।।੩੪।।

---ମନି ଚାଉ ଭଇଆ ପ୍ରଭ ଆଗମୁ ସୁଣିଆ।। ହରି ମଂଗଲୁ ଗାଉ ସଖୀ ଗ୍ରିହୁ ମଂଦରୁ ବଣିଆ।। ହରି ଗାଉ ମଂଗଲୁ ନିତ ସଖୀଏ ସୋଗୁ ଦୂଖୁ ନ ୱିଆପଏ।।

*ଗୁର ଚରନ ଲାଗେ ଦିନ ସଭାଗେ ଆପଣା ପିରୁ ଜାପଏ । । ଅନହଦ ବାଣୀ ଗୁର ସବଦି ଜାଣୀ ହରି ନାମୁ ହରି ରସୁ ଭୋଗୋ । । କହୈ ନାନକୁ ପ୍ରଭୁ ଆପି ମିଳିଆ କରଣ କାରଣ ଜୋଗୋ । ।୩୪ । ।*

ନାମରୂପୀ ପ୍ରଭୁ ଆଗମନ ଶୁଣି   ଆନନ୍ଦରେ ପୂର୍ଣ୍ଣ ହୋଇଲା ମନ ।
ଏ ଶରୀର  ଘର ହୋଇଲା ମନ୍ଦିର  ହରିଯଶ ଗାଅ ଗୋ ସଖୀଗଣ । ।
ହରି ଯଶ ନିତି ଗାଅ ସଖୀଗଣ  ଦୁଃଖ ଶୋକ କେବେ ଛୁଇଁବ ନାଇଁ ।
ଜାଗଇ ସୌଭାଗ୍ୟ ଗୁରୁ ଶ୍ରୀଚରଣେ   ବସି ଧ୍ୟାନ କଲେ ଆପଣା ସାଇଁ । ।
ଗୁରୁଉପଦେଶେ ଅନାହତ ସୁଖ  ହରି ନାମ ରସ ଭୋଗ ହୁଅଇ । ।
କହଇ ନାନକ କରଣ କାରଣ  ସମର୍ଥ ଶ୍ରୀହରି ଆପେ ମିଳଇ । ।୩୪ । ।

*੩੫)  ਏ ਸਰੀਰਾ ਮੇਰਿਆ ਇਸੁ ਜਗ ਮਹਿ ਆਇਕੈ ਕਿਆ ਤੁਧੁ ਕਰਮ ਕਮਾਇਆ।। ਕਿ ਕਰਮ ਕਮਾਇਆ ਤੁਧੁ ਸਰੀਰਾ ਜਾ ਤੂ ਜਗ ਮਹਿ ਆਇਆ।। ਜਿਨਿ ਹਰਿ ਤੇਰਾ ਰਚਨੁ ਰਚਿਆ ਸੋ ਹਰਿ ਮਨਿ ਨ ਵਸਾਇਆ।। ਗੁਰਪਰਸਾਦੀ ਹਰਿ ਮੰਨਿ ਵਸਿਆ ਪੂਰਬਿ ਲਿਖਿਆ ਪਾਇਆ।। ਕਹੈ ਨਾਨਕੁ ਏਹੁ ਸਰੀਰੁ ਪਰਵਾਣੁ ਹੋਆ ਜਿਨਿ ਸਤਿਗੁਰ ਸਿਉ ਚਿਤੁ ਲਾਇਆ।।੩੫।।*

*---ଏ ସରୀରା ମେରିଆ ଇସୁ ଜଗ ମହି ଆଇକୈ କିଆ ତୁଧୁ କରମ କମାଇଆ । । କି କରମ କମାଇଆ ତୁଧୁ ସରୀରା ଜା ତୂ ଜଗ ମହି ଆଇଆ । । ଜିନି ହରି ତେରା ରଚନୁ ରଚିଆ ସୋ ହରି ମନି ନ ୱସାଇଆ । । ଗୁରପରସାଦୀ ହରି ମଂନି ୱସିଆ ପୂରବି ଲିଖିଆ ପାଇଆ । । କହୈ ନାନକୁ ଏହୁ ସରୀରୁ ପରୱାଣୁ ହୋଆ ଜିନି ସତିଗୁର ସିଉ ଚିତୁ ଲାଇଆ । ।୩୫ । ।*

ଆରେ ମୋର ଦେହ ଜଗତକୁ ଆସି   କହତୁ କରିଛୁ କେଉଁ କରମ । ।
କହ ଭଲା କେଉଁ କର୍ମ ତୁ କରିଛୁ  ଯେବେଠୁଁ ଆସିଛୁ ଏଇ ଜଗତେ ।
ଯେଉଁ ହରି ତୋର ରଚନା କରିଛି  ନ ଧରିଲୁ ତାକୁ ତୋ ଅନ୍ତର୍ଗତେ । ।
ଗୁରୁ ବଳେ ହରି ହୃଦୟେ ବସିଲା  ପ୍ରାପ୍ତି ହେଲା ପୂର୍ବ କର୍ମର ଧନ ।
କହଇ ନାନକ ସିଦ୍ଧ ହେଲା ଦେହ ଯେ ଧରିଲା ଚିତ୍ତେ ଶ୍ରୀହରି ନାମ । ।୩୫ । ।

੩੬)   ਏ ਨੇਤ੍ਰਹੁ ਮੇਰਿਹੋ ਹਰਿ ਤੁਮ ਮਹਿ ਜੋਤਿ ਧਰੀ ਹਰਿ ਬਿਨੁ ਅਵਰੁ ਨ ਦੇਖਹੁ ਕੋਈ।। ਹਰਿ ਬਿਨੁ ਅਵਰੁ ਨ ਦੇਖਹੁ ਕੋਈ ਨਦਰੀ ਹਰਿ ਨਿਹਾਲਿਆ।। ਏਹੁ ਵਿਸੁ ਸੰਸਾਰੁ ਤੁਮ ਦੇਖਦੇ ਏਹੁ ਹਰਿ ਕਾ ਰੂਪੁ ਹੈ ਹਰਿ ਰੂਪੁ ਨਦਰੀ ਆਇਆ।। ਗੁਰ ਪਰਸਾਦੀ ਬੁਝਿਆ ਜਾ ਵੇਖਾ ਹਰਿ ਇਕੁ ਹੈ ਹਰਿ ਬਿਨੁ ਅਵਰੁ ਨ ਕੋਈ।। ਕਹੈ ਨਾਨਕੁ ਏਹਿ ਨੇਤ੍ਰ ਅੰਧ ਸੇ ਸਤਿਗੁਰਿ ਮਿਲਿਐ ਦਿਬ ਦ੍ਰਿਸਟਿ ਹੋਈ।।੩੬।।

--- ଏ ନେତ୍ରହୁ ମେରିହୋ ହରି ତୁମ ମହି ଜୋତି ଧରୀ ହରି ବିନୁ ଅୱରୁ ନ ଦେଖହୁ କୋଇ।। ହରି ବିନୁ ଅୱରୁ ନ ଦେଖହୁ କୋଇ ନଦରୀ ହରି ନିହାଲିଆ।। ଏହୁ ୱିସୁ ସଂସାରୁ ତୁମ ଦେଖଦେ ଏହୁ ହରି କା ରୂପୁ ହୈ ହରି ରୂପୁ ନଦରୀ ଆଇଆ।। ଗୁର ପରସାଦୀ ବୁଝିଆ ଜା ୱେଖା ହରି ଇକୁ ହୈ ହରି ବିନୁ ଅୱରୁ ନ କୋଇ।। କହୈ ନାନକୁ ଏହି ନେତ୍ର ଅଂଧ ସେ ସତିଗୁରି ମିଲିଐ ଦିବ ଦ୍ରିସଟି ହୋଇ।।୩୬।।

ନେତ୍ର ମୋର ତୋତେ ହରି ଦେଲେ ଜ୍ୟୋତି ତା ବିନା କାହାକୁ ତୁ ଦେଖ ନାହିଁ ।।
ହରି ବିନା ଆଉ ଦେଖ ନାହିଁ କାରେ  ସବୁ ଦେଖୁ ତୁହି ହରି କୃପାରେ ।
ଯା ଦେଖୁ ଏ ବିଶ୍ୱେ ସବୁ ହରି ରୂପ  ଦେଖାଦିଏ ହରି ଏହି ରୂପରେ ।
ଗୁରୁପରସାଦେ ଏ ଜ୍ଞାନ ପାଇଲି  ହରି ପ୍ରଭୁ ଏକ ବୋଲି ମୁଁ ଜାଣିଲି
ହରି ବିନା କାହିଁ କେ ଆଉ ନାହିଁ ।
କହଇ ନାନକ ନେତ୍ର ଅନ୍ଧ ଥାଏ ଯେବେ ସଦଗୁରୁ ଦରଶନ ହୁଏ
ତେବେ ଯାଇ ଦିବ୍ୟ-ଦୃଷ୍ଟି ହୁଅଇ ।।୩୬।।

੩੭)   ਏ ਸ੍ਰਵਣਹੁ ਮੇਰਿਹੋ ਸਾਚੈ ਸੁਨਣੈ ਨੋ ਪਠਾਏ।। ਸਾਚੈ ਸੁਨਣੈ ਨੋ ਪਠਾਏ ਸਰੀਰਿ ਲਾਏ ਸੁਣਹੁ ਸਤਿ ਬਾਣੀ।। ਜਿਤੁ ਸੁਣੀ ਮਨੁ ਤਨੁ ਹਰਿਆ ਹੋਆ ਰਸਨਾ ਰਸਿ ਸਮਾਣੀ।। ਸਚੁ ਅਲਖ ਵਿਡਾਣੀ ਤਾਕੀ ਗਤਿ  ਕਹੀ ਨ ਜਾਏ।। ਕਹੈ ਨਾਨਕੁ ਅੰਮ੍ਰਿਤ ਨਾਮੁ ਸੁਣਹੁ ਪਵਿਤ੍ਰ ਹੋਵਹੁ ਸਾਚੈ ਸੁਨਣੈ ਨੋ ਪਠਾਏ।।੩੭।।

---ଏ ସ୍ରୱଣହୁ ମେରିହୋ ସାଚୈ ସୁନଣୈ ନୋ ପଠାଏ ।। ସାଚୈ ସୁନଣୈ ନୋ ପଠାଏ ସରୀରି ଲାଏ ସୁଣହୁ ସତି ବାଣୀ ।। ଜିତୁ ସୁଣୀ ମନୁ ତନୁ ହରିଆ ହୋଆ ରସନା ରସି ସମାଣୀ ।। ସଚୁ ଅଲଖ ୱିଡାଣୀ ତାକୀ ଗତି କହୀ ନ ଜାଏ ।। କହୈ ନାନକୁ ଅଂମ୍ରିତ ନାମୁ ସୁଣହୁ ପୱିତ୍ର ହୋୱହୁ ସାଚୈ ସୁନଣୈ ନୋ ପଠାଏ ।।୩୭ ।।

ସତ୍ୟ ଶୁଣିବାକୁ ଆରେ ମୋର କର୍ଣ୍ଣ ପ୍ରେରିତ ହୋଇଛୁ ଏଠାକୁ ତୁହି ।।
ପ୍ରେରିତ ହୋଇଛୁ ଶୁଣିବାକୁ ସତ୍ୟ ଦେହେ ଥାଇ ଶୁଣ ସତ୍ୟ ବଚନ ।
ଯା ଶୁଣି ଉତ୍‌ଫୁଲ୍ଲ ହୁଏ ତନୁ ମନ ଜିହ୍ୱା ହରିରସେ ହୁଅଇ ଲୀନ ।।
ଅଟଇ ଅଲେଖ ସେ ପରମସତ୍ୟ ସେ ହିଁ ପରମାତ୍ମା ବଡ଼ଇ ବିଚିତ୍ର
ରୀତି ନୀତି ତାର କହି ନୁହଏ ।
କହଇ ନାନକ ତା ଅମୃତ ନାମ ପବିତ୍ର ହୁଅ ତୁ କରିଣ ଶ୍ରବଣ
ସତ୍ୟ ଶୁଣିବାକୁ ଆସିଛୁ ତୁହି ।।୩୭ ।।

੩੮) ਹਰਿ ਜੀਉ ਗੁਫਾ ਅੰਦਰਿ ਰਖਿਕੈ ਵਾਜਾ ਪਵਣੁ ਵਜਾਇਆ।। ਵਜਾਇਆ ਵਾਜਾ ਪਉਣ ਨਉ ਦੁਆਰੇ ਪਰਗਟੁ ਕੀਏ ਦਸਵਾ ਗੁਪਤੁ ਰਖਾਇਆ।। ਗੁਰਦੁਆਰੈ ਲਾਇ ਭਾਵਨੀ ਇਕਨਾ ਦਸਵਾ ਦੁਆਰੁ ਦਿਖਾਇਆ।। ਤਹ ਅਨੇਕ ਰੂਪ ਨਾਉ ਨਵ ਨਿਧਿ ਤਿਸ ਦਾ ਅੰਤੁ ਨ ਜਾਈ ਪਾਇਆ।। ਕਹੈ ਨਾਨਕੁ ਹਰਿ ਪਿਆਰੈ ਜੀਉ ਗੁਫਾ ਅੰਦਰਿ ਰਖਿਕੈ ਵਾਜਾ ਪਵਣੁ ਵਜਾਇਆ।।੩੮।।

---ହରି ଜୀଉ ଗୁଫା ଅଂଦରି ରଖିକୈ ୱାଜା ପୱଣୁ ୱଜାଇଆ ।। ୱଜାଇଆ ୱାଜା ପଉଣ ନଉ ଦୁଆରେ ପରଗଟୁ କୀଏ ଦସୱା ଗୁପତୁ ରଖାଇଆ ।। ଗୁରଦୁଆରୈ ଲାଇ ଭାୱନୀ ଇକନା ଦସୱା ଦୁଆରୁ ଦିଖାଇଆ ।। ତହ ଅନେକ ରୂପ ନାଉ ନୱ ନିଧି ତିସ ଦା ଅଂତୁ ନ ଜାଇ ପାଇଆ ।। କହୈ ନାନକୁ ହରି ପିଆରୈ ଜୀଉ ଗୁଫା ଅଂଦରି ରଖିକୈ ୱାଜା ପୱଣୁ ୱଜାଇଆ ।।୩୮ ।।

ଦେହ ଗୁମ୍ଫା ମଧ୍ୟେ ଜୀବ ରଖି ହରି  ପବନର ବାଜା ବଜାଉ ଅଛି ।।

ବଜାଉଛି ବାଜା, ବାଜା ପବନର ପ୍ରକଟ କରିଛି ସେ ନବ ଦୁଆର

ରଖିଛି ଦଶମ ଦ୍ୱାର ଗୁପତ  ।

ଗୁରୁଠାରେ ଯିଏ ବିଶ୍ୱାସ ରଖିଛି ଦଶମ ଦୁଆର ତାକୁ ଦେଖାଇଛି

ଦେଖାଇ ଦେଇଛି କରି ମୁକତ  ।।

ତହିଁ କେତେ ରୂପ କେତେ ହରି ନାମ କେତେ ହରି ନାମ ନବ ନିଧି ସମ

ଅନ୍ତ ନାହିଁ କେତେ ପୂରି ରହିଛି ।

କହଇ ନାନକ ପ୍ରିୟ ପ୍ରଭୁ ହରି  ଦେହ ଗୁମ୍ଫା ମଧ୍ୟେ ଜୀବାତ୍ମାକୁ ଭରି

ପବନର ବାଜା ବଜାଉ ଅଛି ।।୩୮ ।।

*੩੯)  ਏਹੁ ਸਾਚਾ ਸੋਹਿਲਾ ਸਾਚੈ ਘਰਿ ਗਾਵਹੁ।। ਗਾਵਹੁ ਤ ਸੋਹਿਲਾ ਘਰਿ ਸਾਚੈ ਜਿਥੈ ਸਦਾ ਸਚੁ ਧਿਆਵਹੇ।। ਸਚੋ ਧਿਆਵਹਿ ਜਾ ਤੁਧੁ ਭਾਵਹਿ ਗੁਰਮੁਖਿ ਜਿਨਾ ਬੁਝਾਵਹੇ।। ਏਹੁ ਸਚੁ ਸਭਨਾ ਕਾ ਖਸਮੁ ਹੈ ਜਿਸੁ ਬਖਸੇ ਸੋ ਜਨੁ ਪਾਵਹੇ।। ਕਹੈ ਨਾਨਕੁ ਸਚੁ ਸੋਹਿਲਾ ਸਚੈ ਘਰਿ ਗਾਵਹੇ।।੩੯।।*

*---ଏହୁ ସାଚା ସୋହିଲା ସାଚୈ ଘରି ଗାୱହୁ ।। ଗାୱହୁ ତ ସୋହିଲା ଘରି ସାଚୈ ଜିଥୈ ସଦା ସଚୁ ଧିଆୱହେ ।। ସଚୋ ଧିଆୱହି ଜା ତୁଧୁ ଭାୱହି ଗୁରମୁଖି ଜିନା ବୁଝାୱହେ ।। ଏହୁ ସଚୁ ସଭନା କା ଖସମୁ ହୈ ଜିସୁ ବଖସେ ସୋ ଜନୁ ପାୱହେ ।। କହୈ ନାନକୁ ସଚୁ ସୋହିଲା ସଚୈ ଘରି ଗାୱହେ ।।୩୯ ।।*

ସତ୍ୟ ପୂର୍ଣ୍ଣ ଏହି ସଚ୍ଚା ସ୍ତବଗୀତି  ହୃଦୟ ମନ୍ଦିରେ ଗାଅ ହେ ନିତି  ।।

ଗାଅ ସ୍ତବଗୀତି ହୃଦୟ ମନ୍ଦିରେ   ଧ୍ୟାନ କରାହୁଏ ସତ୍ୟର ଯହିଁ  ।

ସତ୍ୟ ଧ୍ୟାନ କରି ହୁଅଇ ସ୍ୱୀକୃତ  ଯେଉଁ ଗୁରୁଭକ୍ତ ଏହା ବୁଝଇ ।।

ସତ୍ୟ ହିଁ ସବୁରି ଅଟେ ଅଧିକାରୀ  ଦିଏ ଯାକୁ ତାର ହୁଅଇ ପ୍ରାପ୍ତି ।

କହଇ ନାନକ ହୃଦୟ ମନ୍ଦିରେ ସଚ୍ଚା ସ୍ତବଗୀତି ଗାଅ ହେ ନିତି  ।।୩୯ ।।

*੪੦)     ਅਨਦੁ ਸੁਣਹੁ ਵਡਭਾਗੀਹੋ ਸਗਲ ਮਨੋਰਥ ਪੂਰੇ।। ਪਾਰਬ੍ਰਹਮੁ ਪ੍ਰਭੁ ਪਾਇਆ ਉਤਰੇ ਸਗਲ ਵਿਸੂਰੇ।। ਦੁਖ ਰੋਗ ਸੰਤਾਪ ਉਤਰੇ ਸੁਣੀ ਸਚੀ ਬਾਣੀ।। ਸੰਤ ਸਾਜਨ ਭਏ ਸਰਸੇ ਪੂਰੇ ਗੁਰ ਤੇ ਜਾਣੀ।। ਸੁਣਤੇ ਪੁਨੀਤ ਕਹਤੇ ਪਵਿਤੁ ਸਤਿਗੁਰੁ ਰਹਿਆ ਭਰਪੂਰੇ।। ਬਿਨਵੰਤਿ ਨਾਨਕੁ ਗੁਰ ਚਰਣ ਲਾਗੇ ਵਾਜੇ ਅਨਹਦ ਤੂਰੇ।।੪੦।।੧।।*

*---ଅନଦୁ ସୁଣହୁ ୱଡଭାଗୀହୋ ସଗଲ ମନୋରଥ ପୂରେ।। ପାରବ୍ରହମୁ ପ୍ରଭୁ ପାଇଆ ଉତରେ ସଗଲ ୱିସୂରେ।। ଦୁଖ ରୋଗ ସଂତାପ ଉତରେ ସୁଣୀ ସଚୀ ବାଣୀ।। ସଂତ ସାଜନ ଭଏ ସରସେ ପୂରେ ଗୁର ତେ ଜାଣୀ।। ସୁଣତେ ପୁନୀତ କହତେ ପୱିତୁ ସତିଗୁରୁ ରହିଆ ଭରପୂରେ।। ବିନୱଂତି ନାନକୁ ଗୁର ଚରଣ ଲାଗେ ୱାଜେ ଅନହଦ ତୂରେ।।୪୦।।୧।।*

ଭାଗ୍ୟବନ୍ତ ଜନେ     ଶୁଣ ହେ ଆନନ୍ଦ     ପୂର୍ଣ୍ଣ ହେବ ସବୁ ଆଶା।
ପରଂବ୍ରହ୍ମ ପ୍ରଭୁ     ହେବ ପରାପତ     ଘୁଞ୍ଚିବ ଦୁଃଖ ଦୁର୍ଦ୍ଦଶା ।।
ଦୂର ହୁଏ ଦୁଃଖ     ରୋଗ ମନସ୍ତାପ     ପ୍ରଭୁ ଗୁଣ ଗାଥା ଶୁଣି।
ହୁଅନ୍ତି ପ୍ରସନ୍ନ ସଛଜନେ, ଏହା     ପୂର୍ଣ୍ଣ ଗୁରୁଠାରୁ ଜାଣି।।
କହନ୍ତେ ଶୁଣନ୍ତେ ପବିତ୍ର, ଏଥିରେ     ପୂର୍ଣ୍ଣ ସଦ୍ଗୁରୁ ଦିଶଇ।
ଗୁରୁପଦ ଆଶ୍ରା କରନ୍ତେ ନାନକ     ଅନାହତ ଶୁଭୁଥାଇ ।।୪୦।।

(((((-----)))))

ଲିସ୍‌ଟ ଗୁରୁୱାଣୀ (ଓଡ଼ିଆ ଲିପ୍ୟାଂତରିତ)---

୧)-ଜପୁଜୀ ସାହିବ ଜୀ

୨)-ଆନଂଦ ସାହିବ ଜୀ

୩)-ସୁଖମଣୀ ସାହିବ ଜୀ

୪)-ଆସା ଦୀ ୱାର

୫)-ଜାପୁ ସାହିବ ଜୀ

୬)-ଶବଦ ହଜାରେ

୭)-ରହିରାସ

୮)-ସୋହିଲା

୯)-ସଲୋକ ମ:୯

୧୦)-ବଚିତ୍ର ନାଟକ

୧୧)-ଅକାଲ-ଉସତତି

୧୨)-ଶବଦ-ପା:୧୦

୧୩)-ନିତନେମ ୧୪)- ସୁଂଦର ଗୁଟକା ,

୧୫)- ଅରଦାସ ୧୬)- ଚୌପଈ

ଶ୍ରୀ ଗୁରୁ ଗ୍ରଂଥ ସାହିବ ଜୀ ସହ ପ୍ରତ୍ୟେକ ୱାଣୀ
ନିମ୍ନ- ଲିଖିତ ଭାଶାରେ ପୀ-ଡୀ-ଐଫ ଫାଇଲ ଉପଲବ୍ଧ---

୧)-ଓଡ଼ୀଆ, ୨)-ବେଂଗାଲୀ, ୩)-ତେଲେଗୁ,

୪)-କନ୍ନଡ଼, ୫)-ମଲୟାଲମ, ୬)- ଗୁଜରାତୀ

e-mail :- sjsingh2000@yahoo.com



# Sardaar Kirpal Singh 'Dakia'

formerly known as Hari Har Dakua

Well known teacher and connected with Aakaashvani for the last many years. Its his big effort inspite of his illness, he has done a great job and written some of The Holy Baani of Sikh Gurus in Odiya so that the message can be read in local language which was not possible before. Baani is availabe already in english and many international languages but in our local Odiya language , it is the first effort , and a good thing is that the Baani translation is written in verse form. He has translated the first Baani **The "japuji Sahib ji"**, of First Guru "**Sri Guru Nanak Dev ji",** the well known **"Sukhmani Sahib jI"- Baani by the Fifth guru 'Sri Guru Arjun Dev ji",** then he translated **"Shloak mehla 9" - Baani by ninth guru "Sri Guru Tegh Bahadur ji"** and one more **"Anand Sahib ji" – Baani by the third guru " Sri Guru Amardaas ji"**